# ଜୟ - ପରାଜୟ

(ପୌରାଣିକ ନାଟକ)

କବିଚନ୍ଦ୍ର ଶ୍ରୀ କାଳି ପ୍ରସନ୍ନ କବି

ପ୍ରାପ୍ତିସ୍ଥାନ:
ଓଡ଼ିଆ ଲେଖକ ସହଯୋଗ ସମିତି ଲି:, କଟକ—୨

ପ୍ରଥମ ସଂସ୍କରଣ—ଡ଼ିସେମ୍ବର୍ ୧୯୫୦

ମୂଲ୍ୟ—ଏକ ଟଙ୍କା

ପ୍ରକାଶକଃ କବିଚନ୍ଦ୍ର, ଶ୍ରୀ କାଳୀ ପ୍ରସନ୍ନ ଦାସ, କବିକୁଟୀର, ସତିଚଉରା
ପ୍ରାପ୍ତିସ୍ଥାନ: ଓଡ଼ିଆ ଲେଖକ ସହଯୋଗ ସମିତି ଲିଃ, ବାଲୁବଜାର,
କଟକ-୨

ମୁଦ୍ରାପକଃ ଶ୍ରୀ ନରସିଂହ ମିଶ୍ର, ଭାରତ ପ୍ରେସ, ବାଖରାବାଦ, କଟକ

# ଉତ୍ସର୍ଗ

ଶ୍ରୀମାନ ଅସୀମ ଚନ୍ଦ୍ର

ଦୀର୍ଘ ଜୀବୀଷୁ :—

ତୋର ପାଇଁ ମୋର ସୁନୀଳ ଆକାଶେ
ଫୁଟେ ତାରା-ଫୁଲ-ଦଳ
ତୋର ପାଇଁ ସିନା ଗନ୍ଧେ ଉଛଳା
ଶ୍ୟାମଳା ଧରଣୀ ତଳ ॥
ତୋର ପାଇଁ ଚାନ୍ଦ ଢାଳେ ସୁଧା ଧାର,
ଝଳରେ କିରଣ ରବି-ଶଶୀ-ତାର,
ସୀମାର ମଝିରେ ଅସୀମ ଛନ୍ଦ ଯେ
ବଜାଏ ମୋହନ ସୁର ।
ସେଥି ପାଇଁ ସିନା ମୋର ଏ ଧରଣୀ
ପୁଲକରେ ଭରପୁର ॥

ନବ କୁଟୀର,
ବିଜୟା ଦଶମୀ,
୧୯୪୮

ତୋର,
"ବାଚୁ"

# ନିବେଦନ

"ଜୟ ପରାଜୟ," "ଅଭିଶାପ" ନାମରେ "ଉଦୟ"ରେ ୧ମ ଅଙ୍କଟି ଧାରାବାହିକ ଭାବେ ପ୍ରକାଶିତ ହୋଇଥିଲା । ମାତ୍ର କେତେକ ଗ୍ରାହକଙ୍କ ଅନୁରୋଧ କ୍ରମେ ଉଦୟ ସମ୍ପାଦକ ପୁସ୍ତକାକାରରେ ପ୍ରକାଶ କରିବା ପାଇଁ ଅଗ୍ରହାନ୍ୱିତ ହେବାରୁ ଧାରାବାହିକ ପ୍ରକାଶ ବନ୍ଦ କରା ହେଲା । ମୋର ଶ୍ରଦ୍ଧେୟ ବନ୍ଧୁ ଉଦୟ ସମ୍ପାଦକ ଶ୍ରୀ ଲକ୍ଷ୍ମୀନାରାୟଣ ମହାନ୍ତି "ଅଭିଶାପ" ନାମଟି ଉପରେ ଘୋର ଆପତ୍ତି ତୋଳିବାରୁ ନାମ ପରିବର୍ତ୍ତନ କରାଗଲା । "ଜୟ ପରାଜୟ" ପ୍ରକାଶ ସମ୍ବନ୍ଧେ ମୁଁ ଲକ୍ଷ୍ମୀନାରାୟଣ ବାବୁଙ୍କ ଠାରେ ବହୁ ପ୍ରକାରରେ ଋଣୀ ।

ଗ୍ରନ୍ଥକାର

## ପୁରୁଷ ଚରିତ୍ର

ଇନ୍ଦ୍ର—ଦେବପତି

ଚନ୍ଦ୍ର
ବରୁଣ } ଦେବଗଣ
କୁବେର

ବୃହସ୍ପତି—ଦେବଗୁରୁ

କଚ—ଐ ପୁତ୍ର

ବୃଷପର୍ବା—ଦୈତ୍ୟପତି

ଶୁକ୍ରାଚାର୍ଯ୍ୟ—ଦୈତ୍ୟଗୁରୁ

ଶଂଖନାଦ—ଦୈତ୍ୟ ସେନାପତି

ବିରୂପାକ୍ଷ—ସେନା ନାୟକ

ଶମ୍ଭୁନାଥ—ପିନାକପାଣିଙ୍କ ପୂଜକ

ଭାର୍ଗବ—ଐ ଭ୍ରାତା

ଭବଶର୍ମ
ଅନିରୁଦ୍ଧ
ଉଦ୍ଦାଲକ
ଦେବଦତ୍ତ | ଶୁକ୍ରାଚାର୍ଯ୍ୟଙ୍କ ଛାତ୍ରବୃନ୍ଦ

( ଭୃତ୍ୟ, ରକ୍ଷୀ ପ୍ରଭୃତି )

## ସ୍ତ୍ରୀ ଚରିତ୍ର

ଶର୍ମିଷ୍ଠା—ଦୈତ୍ୟପତି ବୃଷପର୍ବାଙ୍କ କନ୍ୟା

ଚନ୍ଦ୍ରକଳା—ଐ ସଖି

ଦେବଯାନୀ—ଶୁକ୍ରାଚାର୍ଯ୍ୟଙ୍କ କନ୍ୟା

କଲ୍ୟାଣୀ—ଐ ସଖି

ଉମା—ଶମ୍ଭୁନାଥଙ୍କ ପତ୍ନୀ

(ସଖି ଓ ସହଚରୀଗଣ)

# ଜୟ ପରାଜୟ

## ପ୍ରଥମ ଅଙ୍କ

### ( ପ୍ରଥମ ଦୃଶ୍ୟ )

[ସ୍ଥାନ—ରାଜ ଅନ୍ତଃପୁର, ଗୋଧୂଳିର ସୁନେଲି ଆଲୁଅ ଘରେ ଉଦାସ ଦୃଷ୍ଟିରେ ଅନାଇ ବସିଥିଲେ ଦୈତ୍ୟରାଜକନ୍ୟା ଶର୍ମିଷ୍ଠା । ଦୈତ୍ୟପତି ବୃଷପର୍ବାଙ୍କ ଆସିବା ଦେଖି ଅକୁଳ ଆବେଗରେ ଧାଇଁ ଯାଇ ହାତ ଧରି ଡ଼ାକିଲେ —]

ଶର୍ମିଷ୍ଠା—ବାବା ! ବାବା !

ବୃଷପର୍ବା—ଏତେ ଅଧୀର ଯେ ମା ?

ଶର୍ମିଷ୍ଠା—କେତେ ଦିନ ତମ ଦେଖା ପାଇ ନାହିଁ ଯେ ବାବା । ତମ ପାଇଁ କେତେ ଭାବନ୍ତି, କେତେ କାନ୍ଦନ୍ତି........ବାବା ( କ୍ରନ୍ଦନ ରତା ) ।

ବୃଷପର୍ବା—ଛି ମା, ରାଜାର ଝିଅର ଆଖିରେ ପାଣି ?

ଶର୍ମିଷ୍ଠା—ରାଜାର ଝିଅର ଜୀବନ ନାହିଁ ନା ବାବା ? ରକ୍ତ ମାଂସ ଦେଇ ଗଢ଼ା ନୁହେଁ ସେ ? ସୁଖ ଦୁଃଖ ତା ଜୀବନକୁ ଆଲୋଡ଼ିତ କରେ ନାହିଁ ନା ବାବା ?

ବୃଷପର୍ବା—କରେ ମା କରେ,—କିନ୍ତୁ ରାଜାର କଥା ଭାବୁଛୁ ନା ? ତୋର ପିତାର କଥା ନୁହେଁ—ତୋର ରାଜାର କଥା ?

ଜାଣୁଛ ମା, ରାଜାର ମଧ୍ୟ ଅନୁଭୂତି ରହିଛି। ସେ ମଧ୍ୟ ରକ୍ତ ମାଂସ ଦେଇ ଗଢ଼ା, ପ୍ରାଣ ମଧ୍ୟ ଅଛି ତାର ସତ; କିନ୍ତୁ ସେ ସବୁ ତାର ନିଜର ନୁହେଁ—ତା ତାର ଦେଶର, ଜାତିର, ସଂଘର, ରାଷ୍ଟ୍ରର।

ଶର୍ମିଷ୍ଠା—କିନ୍ତୁ ବାବା, ସମୁଦ୍ରର ଅଗାଧ ବୁକୁରେ କି ଖେଳ ଚାଲେ ଜାଣ ତ? ହୁଏ ତ ନାରୀ ବୋଲି, ଅସହାୟା ବୋଲି, ଆମର ସୁଖ ଦୁଃଖର କଥା କେହି ବୁଝନ୍ତି ନାହିଁ, କେହି ଶୁଣନ୍ତି ନାହିଁ।

ବୃଷପର୍ବା—ସମସ୍ତେ ବୁଝନ୍ତି ମା, ସମସ୍ତେ ଭାବନ୍ତି। ବିଶେଷ କରି ତୋର ପିତା ଭାବେ, ନାରୀ—ମା, ଝିଅ, ଝିଆରୀ, ସ୍ତ୍ରୀ, ଭଗିନୀ ଓର କଲ୍ୟାଣମୟୀ ଜନନୀ। କିନ୍ତୁ ମା ଅପର ପକ୍ଷର କଥା ଟିକିଏ ଭାବି ଦେଖିବୁ—ପିତା ତୋର ରାଜା—ସେ ଦେଶ ଅସହାୟ ମା। ତାର ଅଛି ସବୁ, ଅଥଚ କିଛି ନାହିଁ—ଏକମାତ୍ର ଜାଗ୍ରତ ଧ୍ରୁବ ସତ୍ୟ ତାର କର୍ତ୍ତବ୍ୟ ପାଳନ। ସେଠାରୁ ଟଳିଲେ ମାଏ ବଞ୍ଚନା ହେଲେ ଅଗ୍ନିଭୂତ ହୁଏ ତାର ଲକ୍ଷ୍ୟ, ଠିକ୍ ଯେପରି ନିଆଁରେ ପାଣି ପଡ଼ିଲେ ସେ ଆଉ ନିଆଁ ନୁହେଁ, ତୃଣାଦପି ତୁଚ୍ଛ ଅଙ୍ଗାର ମାତ୍ର। ମା ମୋର; ଭୀଷଣ ସମର କ୍ଷେତ୍ରରେ ମଧ୍ୟ ତୋର କଥା ମନେ ପଡ଼ୁଛି—ମନେ ପଡ଼ି ବୁକୁଟା ବିଦାରି ଦେଉଛି; କିନ୍ତୁ ନିରୁପାୟ ମା, ନିରୁପାୟ ମୁଁ। ରାଜା ଯେପରି ଦେଶର ରାଷ୍ଟ୍ର ମୁଣ୍ଡର ହର୍ତ୍ତା କର୍ତ୍ତା ବିଧାତା—ଠିକ୍ ସେହିପରି ସେ ସ୍ୱାତନ୍ତ୍ର୍ୟ ସର୍ବସ୍ୱ-ପ୍ରଜାର କଲ୍ୟାଣ କାମୀ। ରାଷ୍ଟ୍ରର ସୁଖ, ଦୁଃଖ, ମାନ, ଅଭିମାନ, ଆଶା ଓ ଆକାଙ୍କ୍ଷାର ଦୁଆରରେ ଜୀବନ ଉତ୍ସୃଷ୍ଟ ତାର।

ବେଶୀ କି କହିବି ମା, ତୋତେ ନ ଦେଖି କେତେ ଦିନ କାନ୍ଦୁଛି, କିନ୍ତୁ ନୀରବରେ, ସଂଗୋପନରେ, ପ୍ରଜା ଯହିଁରେ ନ ବୁଝିବେ ନ ଜାଣେ ରାଜା ତାର ଦେଶ ଠାରୁ ତା'ର ଝିଅକୁ ଅଧିକ ଭଲପାଏ । ମା, ରାଜାର ଜୀବନ ମରଣର ଏକମାତ୍ର କାମ୍ୟ—ତାର ଦେଶର, ଜାତିର, ସନ୍ତୁର ମଙ୍ଗଳ ସାଧନା ।

ଶର୍ମିଷ୍ଠା--ଏହାକୁ କି ମଙ୍ଗଳ ସାଧନା କୁହାଯାଏ ବାବା ? ଦେବତା ଦାନବ ମଧ୍ୟରେ ବିରୋଧର ସୃଷ୍ଟି କରି ଦିନ ରାତି ହଣା-ହଣି କରାଉଛି, ଯା ପାଇଁ ତମ ମନରେ ଶାନ୍ତି ନାହିଁ—ଦେଶରେ, ଜାତିରେ, ଘରେ ଘରେ ହାହାକାର ଉଠୁଛି । ଏହାର କି ଏକାନ୍ତ ପ୍ରୟୋଜନ ? ଜୀବ ଜଗତରେ ପ୍ରାଣ ବିନିମୟରେ ପ୍ରାଣ—ଏହା କି ମଙ୍ଗଳମୟ ସତ୍ୟ ଧର୍ମ ବାବା ?

ବୃଷପର୍ବା--ଧର୍ମାଧର୍ମ କିଛି ନୁହେଁ ମା—ସ୍ଥାନ, କାଳ, ପାତ୍ର ଭେଦରେ ଭିନ୍ନ ରୂପରେ, ଭିନ୍ନ ଗୁଣରେ, ତାର ବିକାଶ—ବିଭିନ୍ନ ରୂପରେ ତାର ଅବସ୍ଥିତି ।

ଶର୍ମିଷ୍ଠା--କେବଳ ଦାର୍ଶନିକ ତଥ୍ୟ ନେଇ ତ ଜୀବନ ଚଳେ ନା ବାବା—ବାସ୍ତବତାହିଁ ସତ୍ୟ, ତାହାହିଁ ଭୋଗ୍ୟ, ତାହାହିଁ କାମ୍ୟ । ଦେବତା ସଂଘକୁ ପ୍ରୀତିର ବନ୍ଧନରେ--ସ୍ନେହର ଶିକୁଳି ଦେଇ ବାନ୍ଧି ରଖିଥିଲେ ଆଜି ଦେବାସୁରର ଘରେ ଘରେ ଏତେ ମର୍ମନ୍ତୁଦ ଆର୍ତ୍ତନାଦ, ହୃଦୟ ବିଦାରି ହାହା-କାର ଉଠନ୍ତା କି ?

ବୃଷପର୍ବା--ତାହା ତେ ସମ୍ପୂର୍ଣ୍ଣ ଅସମ୍ଭବ ମା ?

ଶର୍ମିଷ୍ଠା--ଅସମ୍ଭବ--? ଅସମ୍ଭବ କଅଁ ବାବା ? ପ୍ରୀତିର ଶାସନ ସ୍ନେହର ଶାସନ ଠାରୁ ଦଣ୍ଡାଦଣ୍ଡ କେତେ କହିଁ କି ଅଧିକ ଦୁର୍ବଳ ? ଦେବତା ସଂଘକୁ ଆପଣାର କରି ବାନ୍ଧି ରଖିଲେ ତ ସବୁ ଦ୍ୱେଷ, ସବୁ ହିଂସା, ସବୁ ବିଦ୍ୱେଷ ତୁଟି ଯା'ନ୍ତା ।

ବୃଷପର୍ବା—କଲ୍ୟାଣୀ ମା ମୋର୍, ତୋର କଲ୍ୟାଣ କାମନା ସତ୍ୟରେ ମଧ୍ୟ ଅନୁକରଣୀୟ । କିନ୍ତୁ ଜାଣୁଛୁ ମା, ମୁଁ ସ୍ୱାତନ୍ତ୍ର୍ୟ ସମ୍ବନ୍ଧରେ । ମୋର ଦେଶକୁ ଜାତିକୁ ବାରବାର ନାନା ଛଳେ, ନାନା ରୂପେ ସେମାନେ ଲାଞ୍ଛିତ କରିଛନ୍ତି, ହେୟ କରିଛନ୍ତି, ତାଙ୍କ ନ୍ୟାଯ୍ୟ ପ୍ରାପ୍ୟରୁ ବଞ୍ଚିତ କରିଛନ୍ତି, ସେହି ଦେବତା ସଂଘକୁ କ୍ଷମା କରିବା, ପ୍ରୀତିର ବନ୍ଧନରେ ବାନ୍ଧି ରଖିବା ସେ ତୋର ପିତା ପକ୍ଷେ ସମ୍ଭବପର ହେଲେ ମଧ୍ୟ ତୋର ରାଜାର ପକ୍ଷେ ସମ୍ପୂର୍ଣ୍ଣ ଅଧିକାର ବହିର୍ଭୂତ । ସମୁଦ୍ର ମନ୍ଥନରେ ଦୈତ୍ୟକୁଳ କ'ଣ ନିଶ୍ଚେଷ୍ଟ ଥିଲେ ମା ? ଅସୁରଙ୍କ ବୀର୍ଯ୍ୟର କଣା ମାତ୍ର ନିଶ୍ଚେଷ୍ଟ ଥିଲା ? ତଥାପି ଦେବତା ବୋଲି ସେମାନେ ପାଇଲେ ଅମୃତ, ଅମୃତ, ଚିର ଆକାଙ୍କ୍ଷିତ—ଦୈତ୍ୟ ଫେରିଲା କେବଳ ଧ୍ୱସ୍ତରେ କେବଳ ଦୈତ୍ୟ ବୋଲି ? ଏ ପାର୍ଥକ୍ୟ-ଦୈତ୍ୟରାଜର ସହନୀୟ ନୁହେଁ ମା ? ଆଚ୍ଛା କହିତ ମା, ଦେବତା ମଧ୍ୟରେ ଅଯୋଗ୍ୟ ନାହାନ୍ତି,——ଦୈତ୍ୟ କୁଳରେ ଯୋଗ୍ୟତାର କି ଏକାନ୍ତ ଅଭାବ ? ଏ ପାର୍ଥକ୍ୟ କ'ଣ ଜାଣୁ ମା—ଏ ଅଭିଜାତ୍ୟର ଗର୍ବ--ବଂଶ ଗାରିମା ! ପିତା ତୋର ଦୈତ୍ୟପତି--କର୍ତ୍ତବ୍ୟ ତାର ସଂଘକୁ ସଗର୍ବେ, ସୁପଥେ ପରିଚାଳିତ କରିବା । ଦୈତ୍ୟରାଜ ହୀନ ନୁହେଁ,

ଅଥର୍ବ ନୁହେଁ, ଅଯୋଗ୍ୟ ନୁହେଁ । ମଥା ପାତି ଅବଜ୍ଞାର ସହିବା ଭଳି ହୀନତା ଆଜି ଯାର ଠରେ ଥାଏ ଥାଉ, ବୈଦ୍ୟପତିର ତାହା ଏକାନ୍ତ ଅସହ୍ୟ । ଯାନ୍ତୁ ମା ଏ ସବୁ ଗଣ୍ଡଗୋଳିଆ କଥା । ରାଜନୀତି ବଡ଼ କୂଟ—ବଡ଼ ଜଟିଳ । ଏଥିରେ ହସି ହସି ପିତା ବହାଏ ସ୍ନେହ ଦୁର୍ବଳ ପୁତ୍ରର ବୁକୁରେ ତୀବ୍ର, ତିକ୍ତ, ବିଷାକ୍ତ ଛୁରୀ । ସିଂହାସନ ଆଶାରେ ପୁତ୍ର ଗୃହେଁ ଜନ୍ମ ଦାତା ନମସ୍ୟ ପିତାର ଛିନ୍ନ ମୁଣ୍ଡ । ଥାଉ ମା, ଏସବୁ ଅପ୍ରିୟ କଥା ଆମ ମା ପୁଅ ମଝିରେ ବହୁ ସେ ହ ସୁଣୀତଳ ମନ୍ଦାକିନୀର ମୃତ ଧାର ଅବରୁଦ୍ଧ । ରଣକ୍ଳାନ୍ତ ପୁତ୍ର ତୋର ଆଜି ବଡ଼ ଶ୍ରାନ୍ତ ମା । ତୋର ବିଶ୍ୱ ବିଧାତାର ସବୁ ଦୁଃଖ ଭୁଲା ସ୍ନେହ ମୋହନୀୟ ଆରାଧନା ଗୀତଟି ଗାଇ ଶାନ୍ତି ଦେ ମା, କ୍ଳାନ୍ତ ଯାଉ ।

ଶର୍ମିଷ୍ଠା—ଶିର କଲ୍ୟାଣମୟ ସଖା ତବେ

ଶୁଭ୍ରଶୀର୍ଷ ତାଲ ଶତ ଧାରେ

ତବ ଦରଶନ ପାଇଁ ସଦା ରହେ ଗୃହୀ

ସଜାଡରେ ଡାକେ ବାରେ ବାରେ ।

କରୁଣାର ଧାର ଝରଝର ଝରୁ

ଶ୍ରାବଣ ବରଷା ସମ

ଶ୍ରୀଚରଣ ତଳେ ଅନାଥର ନାଥ

ନମ ନମ ନମ ନମ— ।

ତମ ପାଇଁ ଫୁଟେ କେତେ ନା କୁସୁମ

ଅଳି କରେ କେତେ ଗାନ

ତମର ମହିମା ପ୍ରକାଶଇ ପ୍ରଭୁ
କୋକିଳ ପଞ୍ଚମ ତାନ ।
ଧରା ଅମ୍ବର ଉଚ୍ଛ୍ୱସିତା ଛନ୍ଦ
ନମ ନମ ପ୍ରିୟତମ ପ୍ରିୟତମ
ନମ ନମ !



## ଦ୍ୱିତୀୟ ଦୃଶ୍ୟ

[ ସ୍ଥାନ—ଦେବସଭା, ଦେବଗଣ ଆନନ୍ଦ ବିଭୋର, ଉର୍ବଶୀ, ମେନକା, ରମ୍ଭା, ତିଲୋତ୍ତମା, ଘୃତାଚୀ ପ୍ରଭୃତି ଅପ୍ସରାଗଣ ନୃତ୍ୟଗୀତରତା ]

ଫଗୁଣ ନିଶୀଥ ଗନ୍ଧ ବହନେ, ଆକାଶେ ଉଠିଲା ଭାସିରେ ।
ହଜିର ଫୁଟା କୁସୁମ କଳୀ, ହେଲଣି ଅଧ ହାସିରେ ॥
ଅନ୍ଧାର ପଞ୍ଜିରେ ସୌରଭ ଲୋଭ,
ଅଳି ତାକୁ ପାଇଲା ନାହିଁ—,
ପାଖୁଡ଼ା ମେଲାଇ ଡାକିଲା କୁସୁମ
କେଉଁ ଠାର ଦୟିତ ତମେ କାହିଁ ?
ଫୁଲର ଆଶା ନିରାଶ ହୋଇ,
ବୁକୁରେ ଦେଲା ବେଦନା ଭରି,
ସରମ ଜଡ଼ିତ-ମାନିନୀ—ନୟନୁଁ ଝରଇ ଅଶ୍ରୁ ରାଶିରେ ।

ବରୁଣ—ସୁନ୍ଦର ! ସୁନ୍ଦର ! ଅତି ସୁନ୍ଦର—
ଚନ୍ଦ୍ର—ଏହୁଁ ଆଉ ଅଧିକ ଅଭିଭାଷଣ ମିଳିଲା ନାହିଁ ନା ବରୁଣ ?
ପ୍ରତିହାରୀ—ଗୁରୁଦେବ !
(ବୃହସ୍ପତି ପ୍ରବେଶ କରୁ ପ୍ରଣାମାନ୍ତେ)

ଇନ୍ଦ୍ର—[illegible] ଏକାନ୍ତ ଅଧୀର, ପରେ ଦେଖା ହେଲେ—

( ବୃହସ୍ପତି ପ୍ରବେଶ କରି )

ବୃହସ୍ପତି—ଭଲ ହୁଅନ୍ତା—ନା ଦେବାଧିପ ! ଜାଣେ ଆପଣ ଦେବ-ପତି-ଅଥାପି ଗୁରୁର ପ୍ରୟୋଜନ ଯେ । ଗୁରୁ ଠାରେ ସମସ୍ତ ଅସାଧ୍ୟ କିଛି ନାହିଁ । ଜାଗ୍ରତରେ ଧ୍ୟାନରେ, ସ୍ୱପ୍ନରେ ସବୁ ବେଳେ ଶିଷ୍ୟର କଲ୍ୟାଣ କାମନା ପରା ତାଙ୍କ ଜୀବନର ଏକମାତ୍ର ଲକ୍ଷ୍ୟ, ଏକମାତ୍ର ଧ୍ରୁବ ସତ୍ୟ । ବର୍ତ୍ତମାନ ଏ ଆନନ୍ଦ ଉତ୍ସବ ସ୍ଥଗିତ ରହୁ ।

ଇନ୍ଦ୍ର—ଗୁରୁଦେବ, ଆଜ ଆମ୍ଭେମାନେ ଦଣ୍ଡ ଶ୍ରାନ୍ତ କ୍ଲାନ୍ତ, ଶତ୍ରୁ ବିନୋଦନ ପରି ଶ୍ରମ ପ୍ରସୂତ ଅଙ୍ଗ ଆମ୍ଭେ କ୍ଲାନ୍ତ ସତ୍ୟ, କିନ୍ତୁ ବିଜୟୀ ଅସୁର କୁଳ ପ୍ରାୟ ନିର୍ମୂଳ କରିଛୁଁ । ଆଜି ଆନନ୍ଦରେ ବାଧା ପଡ଼ିଲେ—

ବୃହସ୍ପତି—ଉତ୍ସବର ଯଥେଷ୍ଟ ସମୟ ପାଇବ । ଆଜି ତୁମ୍ଭେମାନେ ବିଜୟୀ ସତ୍ୟ; କିନ୍ତୁ କ୍ଷଣଭଙ୍ଗୁର ଜୟର ଉଲ୍ଲାସରେ ଉନ୍ମତ୍ତ ହେବା ଅନ୍ୟର ପକ୍ଷରେ ସମ୍ଭବପର ହେଲେ ମଧ୍ୟ ଦେବପତି ଇନ୍ଦ୍ରର ସେଥିରେ ଯୋଗ ଦେବାର ବିନ୍ଦୁ ମାତ୍ର ଅଧିକାର ନାହିଁ ।

ଇନ୍ଦ୍ର—ଗୁରୁଦେବ— ।

ବୃହସ୍ପତି—ମହା ଗୁରୁ ଭାର ଶିରରେ ବହି ଏତେ ଚପଳ, ଚଞ୍ଚଳ ହେଲେ ଚଳିବ କି ଇନ୍ଦ୍ର ? ଆଜି ଯୁଦ୍ଧ ଜୟ କରି ଦେବକୁଳ ସୋମରସରେ ଉନ୍ମତ୍ତ, ଆନନ୍ଦ ବିଭୋର; କିନ୍ତୁ କାଲି ବିପଦର ଯେଉଁ ଜ୍ୱଳନ୍ତ ଛବି ଦେଖିବ, ସେଥିରେ ସବୁ ଆନନ୍ଦ [illegible] ଉତ୍ସବ ମ୍ଳାନରୁ ମ୍ଳାନତର ହୋଇ ଯିବ ଯେ—।

ଇନ୍ଦ୍ର—ଅର୍ଥାତ୍—?

ବୃହସ୍ପତି—ସମସ୍ତ ମୃତ ଦୈତ୍ୟ ଅପହୃତ ।

ଇନ୍ଦ୍ର—ମୃତ ମଂସରେ ତ ଦେବକୁଳ ପୁଷ୍ଟ ନୁହନ୍ତି ଗୁରୁଦେବ ! ଏଥିରେ ଦୈତ୍ୟଙ୍କର ତର ଶାଶ୍ୱତ ଅଧିକାର ।

ବୃହସ୍ପତି—ପୁଷ୍ଟି ଅପୁଷ୍ଟି ଅବା ଅଧିକାର ଅନଧିକାରର କଥା ନୁହେଁ ଦେବପତି । 'ଦୈତ୍ୟଗୁରୁ ଶୁକ୍ରାଚାର୍ଯ୍ୟଙ୍କ ମୃତ-ସଞ୍ଜୀବନୀ ଆବିଷ୍କୃତ ହେଲା ବୋଲି ପ୍ରମାଣ ମିଳୁଛି । ମୃତ ଦୈତ୍ୟର ଅପହରଣ ତାର ଜ୍ୱଳନ୍ତ ପ୍ରମାଣ । ପ୍ରକୃତରେ ସେ କୃତ କାର୍ଯ୍ୟ ହୋଇଥିଲେ ଦୈତ୍ୟକୁଳ ତର ଅମର, ତର ଅବିନାଶୀ ।

ଇନ୍ଦ୍ର—ସେଥିପାଇଁ କ'ଣ ଏ ମୃତ ଦୈତ୍ୟର ଅପହରଣ ?

ବୃହସ୍ପତି—ଅନିବାର୍ଯ୍ୟ ସତ୍ୟ— ।

ଇନ୍ଦ୍ର—ତେବେ ଉପାୟ ଗୁରୁଦେବ ?

ବୃହସ୍ପତି—ସଞ୍ଜୀବନୀ ବିଦ୍ୟା ଆୟତ୍ତ କରିବା ଭିନ୍ନ ଅନ୍ୟ ଉପାୟ ନାହିଁ ।

ଇନ୍ଦ୍ର—ଦୈତ୍ୟଗୁରୁ ଦେବ ସଙ୍ଘରେ ଲାଞ୍ଛିତ ଅବହେଳିତ, ସେ କ'ଣ ଦେବତାଙ୍କୁ ତା ଦାନ କରିବେ ?

ବୃହସ୍ପତି—ସ୍ୱଇଚ୍ଛାରେ ସେ ଦାନ କରିବେ ନାହିଁ ସ୍ୱତଃସିଦ୍ଧ, କିନ୍ତୁ ଛଳରେ ବଳରେ କୌଶଳରେ ତାଙ୍କ ଠାରୁ ଏହା ଶିଖିବାକୁହିଁ ପଡିବ । ଅନ୍ୟଥା ଉପାୟ ନାହିଁ ।

ଇନ୍ଦ୍ର—ଶିକ୍ଷାର୍ଥୀ ରୂପରେ ଯିବ କିଏ—ଚନ୍ଦ୍ର ?

ଚନ୍ଦ୍ର—ସେ ଦୈତ୍ୟପୁରୀକୁ ଯିବ କିଏ ?

ଇନ୍ଦ୍ର—ତରୁଣ, ସାହସୀ, ଶିକ୍ଷିତ ବୁଧ ?

ଚନ୍ଦ୍ର—ମୋର ତେବେ ମାଧ୍ୟ ଆପତ୍ତି ନାହିଁ, କିନ୍ତୁ ମୁଁ ଜାଣେ ସେ ସ୍ୱୟଂ ଅସ୍ୱୀକାର କରି ବସିବ ।

ଇନ୍ଦ୍ର—କୁବେର ! ସୁଯୋଗ୍ୟ ନଳ କୁବେର ?

କୁବେର—ବିଳାସୀ, ଅକ୍ଷମ, ଅପଦାର୍ଥ ।

ଇନ୍ଦ୍ର---ବରୁଣ ! ପୁଷ୍କର ?

ବରୁଣ---ସେ କୌଶଳୀ ସତ, କିନ୍ତୁ ତାଙ୍କ ଜନନୀର ଆଦେଶ ମିଳିବ ନାହିଁ । ସେ ତାଙ୍କ ନୟନ ପିତୁଳା, ପଲକେ ମିଳ ଚଲିକେ ହକେ ।

ଇନ୍ଦ୍ର---ହୁଁ, ତେବେ ଉପାୟ ଗୁରୁଦେବ ?

ବୃହସ୍ପତି---କଚ ଯେ ବହିଛନ୍ତି ଇନ୍ଦ୍ର !

ଇନ୍ଦ୍ର---ଗୁରୁଦେବ ! ସେ ବିପଦ ସଙ୍କୁଳ ସ୍ଥାନକୁ ସ୍ନେହର କଚକୁ ପଠାଇବା ପାଇଁ ଆପଣ ପ୍ରସ୍ତୁତ ?

ବୃହସ୍ପତି--ସତ ପ୍ରସ୍ତୁତ, ଏହା ତାହାର ଓ ମୋର ଏକାନ୍ତ କର୍ତ୍ତବ୍ୟ । ଗୁରୁଶିଷ୍ୟ ସମ୍ବନ୍ଧ ଅଟୁଟ, ଅଚ୍ଛେଦ୍ୟ, ଅକ୍ଷୁଣ୍ଣ । ଗୁରୁ-ଦାସ ନୁହେଁ, ଭୃତ୍ୟ ନୁହେଁ, ଗୁରୁ,--ଗୁରୁ । ବର୍ତ୍ତମାନ ଉତ୍ସବ ବନ୍ଦ ରହୁ । କଚ ଯିବା ପୂର୍ବରୁ ଗୋପନ ଆଲୋଚନାର ଏକାନ୍ତ ପ୍ରୟୋଜନ !

ଇନ୍ଦ୍ର---ତଦାୟ ବନ୍ଧୁଗଣ !

[ ବୃହସ୍ପତି ଓ ଇନ୍ଦ୍ର ଭିନ୍ନ ସକଳଙ୍କ ପ୍ରସ୍ଥାନ ]



## ତୃତୀୟ ଦୃଶ୍ୟ

[ କାଳ ପ୍ରଭାତ, ଦୈତ୍ୟଗୁରୁ ଶୁକ୍ରାଚାର୍ଯ୍ୟଙ୍କ ଆଶ୍ରମରେ ବସି ଛାତ୍ରବୃନ୍ଦ ପାଠ ରତ ]

ବାଳକ—ଅ, ଆ, ଅଜ ଗାମ…ଯ, ଯ, ଯଦା…ଲକ୍ଷ୍ ଲକ୍ଷ୍ ଲକ୍ଷ୍

ଭାର୍ଗବ—ଥୋଡ଼ା ଭାଇ ଲକ୍ଷ୍ ଲକ୍ଷ୍, ଲକ୍ଷ୍ ନୁହେଁ ଲକ୍ଷ୍ମୀ ।

ବାଳକ—ଲକ୍ଷ୍ ଲକ୍ଷ୍ ଲକ୍ଷ୍………… ।

ଭାର୍ଗବ—ଲକ୍ଷ୍ମୀ ।

ବାଳକ—ଲ ଲ ଲକ୍ଷ୍ମ ।

ଭାର୍ଗବ—ଲେଖିରଖ—"ଅଜ ଗାମ ଯଦା ଲକ୍ଷ୍ମୀ
ନାରୀ ଭେଳ ଫଳାମୁବର୍—"
ଭାର୍ଗବ ଦମେ ହାହା' ଶବ୍ଦ ରୁପ କର ।

ଭାର୍ଗବ—ତମେ କଏ ହୋ ?

ଭାର୍ଗବ—ମୁଁ ଜଣେ ଛାତ୍ର ।

ଭାର୍ଗବ—ମୁଁ ଭାବୁ ଥିଲି ଗୁରୁଦେବ ହେବେ ପରା ?

ଭାର୍ଗବ—ଏ ବୋକାଟାକୁ ଏଠାକୁ ଆଣିଲା କଏ ମ ?

ଭାର୍ଗବ—କ'ଣ କହୁଲୁରେ ପାଜି ମୁଁ ବୋକା—ତୋ ବାବଜ ପୁରୁଷ ବୋକା ।

ଭାର୍ଗବ—କଣ କହୁଲୁରେ ?

ଭାର୍ଗବ—ଲାଲ ଆଖି କରୁଛୁ ଯେ ମାରିବୁ ନା କଅଣ ?

( ଦେବଯାନୀର ପ୍ରବେଶ )

ଦେବଯାନୀ—ଛିଃ ଭାରେ ଯେ ଯୁଦ୍ଧ ଷେତ୍ରରେ ପରିଣତ ହୋଇ ଭାର୍ଗବ, ବ୍ୟାପାର କଅଣ ?

ଭାର୍ଗବ—ଦେଖନ୍ତୁ ନା, ଏ ବୋକାଟା ମୋତେ ଯାହା ଇଚ୍ଛା ତା

ଚାଲି ଫଇଜତ୍ କରୁଛୁ । ଆପଣ ତ ଜାଣନ୍ତି ଗୁରୁଦେବଙ୍କ ଆଦେଶ ମତେ ପ୍ରତ୍ୟେକ ଛାତ୍ରଙ୍କୁ ମୁଁ ଶିକ୍ଷା ଦିଏଁ । ଏ ନୂଆ ପଢ଼ୁଆଟିକୁ—

ଭାର୍ଗବ—ହେଁ ମୁଁ ନୂଆ ପଢ଼ୁଆ ? ମାଧବାଚାର୍ଯ୍ୟଙ୍କ ଆଶ୍ରମରେ ତିନି ବର୍ଷ ଧରି ଗଙ୍ଗା ଶବ୍ଦ ରୂପ ଘୋଷିଛି । ମୁଁ ନୂଆ ପଢ଼ୁଆ ? ମୋ ବୁଦ୍ଧି ଶୁଦ୍ଧି ଦେଖି ଆଚାର୍ଯ୍ୟ କହିଲେ ବାପ, ତୋତେ ବିଦ୍ୟାର୍ଣ୍ଣବ ଉପାଧିରେ ଭୂଷିତ କଲି । ମୋର ବିଦ୍ୟାବୁଦ୍ଧି ସବୁ ତୁ ଅଦ୍ଭୁତ ଦେଖୁଛୁ । ଏବେ ଯା ଦୈତ୍ୟଗୁରୁ ଶୁକ୍ରାଚାର୍ଯ୍ୟଙ୍କ ପାଖରେ ଶିକ୍ଷା ନେ । ସେଥିପାଇଁ ନା ମୁଁ ଧାଇଁ ଆସିଲି । ନ ହେଲେ ସେଠାରେ ଯା ସୁଖ ସାତ ପାନରେ ; ଦଶ ଦିନ ଅନୁପସ୍ଥିତ ରହ ଭାବନା ନାହିଁ । କେବଳ ମୋ ପାଇଁ ଏ ଅସୁବିଧା, ଆନ ପିଲା ହେବାଲ ମାଷ୍ଟରଙ୍କ ପାଠରେ ନଦ୍ୟାନ୍ତୁ ହୁଅନ୍ତେ । କେବଳ ବୁଢ଼ିଆ ପିଲା ହୋଇଲି ମୋର ସାତ ଖଣ୍ଡ ମାଫ୍ । ଜାଣନ୍ତି, ମୋତେ ଗୁରୁଦେବ ପଢ଼ାଇବାକୁ ଡରନ୍ତି ?

ଦେବଯାନୀ—ଡାହୁଁକି ?

ଭାର୍ଗବ—ଏକଟତଦେବୁଲ କିଁଣ ପଚାରି ବସିବ ବୋଲି ।

ଦେବଯାନୀ—ଉତ୍ତର ଦେବା ଭୟରେ—

ଭାର୍ଗବ—ତମେ......ଏହୁ ଆପଣେ ଭାବ ଶିକ୍ଷିତ ଲୋକ ।

ଦେବଯାନୀ—ନା, ନା, ମୁଁ ଜମା ଶିକ୍ଷିତା ନୁହେଁ ।

ଭାର୍ଗବ—ହେଁ, ହେଁ, ହେଁ, ଆପଣଙ୍କ ଠିକଏ ଭୁଲ ହେଲା—ଲୋକର ବିଶେଷଣ ପଦ, 'ଶିକ୍ଷିତା' ହେବ କେମିତି ? 'ଲୋକ' ହୋଇଥିଲେ ସିନା 'ଶିକ୍ଷିତା' ହୁଅନ୍ତା ।

ଦେବଯାନୀ—ଭୁଲ ହୋଇ ଯାଉଛି । କିନ୍ତୁ ଭାର୍ଗବଙ୍କ ସାଙ୍ଗରେ ଗଣ୍ଡଗୋଳ ହେଉଥିଲା କାହିଁ ?

ଭାର୍ଗବ—ଗଣ୍ଡଗୋଳ କଏ କହିଲା ?

ଦେବଯାନୀ—ମୁଁ ଅନ୍ତରାଳରୁ ଥାଇ ସବୁ ଶୁଣୁଥିଲି ପରା ।

ଭାର୍ଗବ—ଓଃହୋ । ସେ କିଛି ନୁହେଁ । ଭାର୍ଗବଙ୍କର ବୁଝିବା ଭୁଲ । ସେ ମୋ ଠାରୁ ବେଶି ପାଠ ଶିଖିଥିଲେ ମଧ୍ୟ ସେ ଶିଷ୍ୟ— ମୁଁ ମଧ୍ୟ ଶିଷ୍ୟ, ମୋତେ ସେ ଶିଖାଇବେ କିମିତି । ଗୁରୁ ବିନା ଶିକ୍ଷା ଦେବେ—ଶିଷ୍ୟ···ଶିଷ୍ୟ······

ଦେବଯାନୀ—ନିଶ୍ଚୟ ଭାର୍ଗବଙ୍କ ବୁଝିବା ଭୁଲ । ଏଣିକି ସାବଧାନ ହେବ ଭାର୍ଗବ । ପିତାଙ୍କ ଆସିବା ସମୟ ହେଲାଣି, ଅଥଚ ସମିଧ--

ଭାର୍ଗବ—ଦେବଦାରୁ ଫେର ନାହାନ୍ତି ?

ଦେବଯାନୀ—ନା ।

ଭାର୍ଗବ—ଅଚ୍ଛା । ମୁଁ ଦେଖୁଛି । ବିଦାୟ ବନ୍ଧୁଗଣ ।

[ ସମସ୍ତଙ୍କ ପ୍ରସ୍ଥାନ, ପୋଥିପତ୍ର ସଜାଡ଼ି କରୁଁ କରୁଁ, ବସି ରହିଲେ ଅନିରୁଦ୍ଧ ଓ ଭାର୍ଗବ ]

ଭାର୍ଗବ—ଭାଇ, ଏ ଝିଅଟି ଆସିଲେ କାହୁଁ ?

ଅନିରୁଦ୍ଧ—ଗୁରୁକନ୍ୟା ପରା ?

ଭାର୍ଗବ--ଶୁକ୍ରାଚାର୍ଯ୍ୟଙ୍କ କନ୍ୟା ? ଏହାଙ୍କ ବିବାହ ହୋଇଛି ?

ଅନିରୁଦ୍ଧ--ନା ।

ଭାର୍ଗବ--କାହିଁ ?

ଅନିରୁଦ୍ଧ—ଯୋଗ୍ୟ ପାତ୍ରର ଅଭାବ ଯୋଗୁଁ ।

ଭାର୍ଗବ--ଯୋଗ୍ୟ ପାତ୍ରର ଅଭାବ ? ଗୁରୁଦେବତ ବ୍ରାହ୍ମଣ – ବ୍ରାହ୍ମଣ

କୁଳରେ ପୁଣି ଯୋଗ୍ୟତାର ଅଭାବ ? ଗୁରୁଦେବ କପର ଯାଚ ଗୃହାନ୍ତି ?

ଅନିରୁଦ୍ଧ— ସୁନ୍ଦର, ଶିକ୍ଷିତ, ଚରିତ୍ରବାନ୍, କର୍ମଠ···।

ଭାର୍ଗବ--ତିନିବର୍ଷ ଧରି ବେଦବ୍ରହ୍ମ ଶିଖିଲୁ । ମୋ ରୂପର କିଛୁ ଅଭାବ ଦେଖୁଛୁ । ଚରିତ୍ର ମୋ ପରି କାହାର ନାହିଁ କହିଲେ ଚଳେ । ଆଉ କର୍ମଠ ? ଆରେ ବାପ, କର୍ମଠ ହେବୁ କଅଣ ? ଯା ଘରେ ଖାଇବା ପିଇବା ଏକାନ୍ତ ଅଭାବ, ଖଟି ମରି କର୍ମଠ ହେଉ ସେ, ଆପତ୍ତି ନାହିଁ । କିନ୍ତୁ ଯାହା ଘରେ ଧନ ଧାନ୍ୟ ଫାଟି ପଡୁଛି, କେଉଁ ଦୁଃଖରେ ସେ କର୍ମଠ ହେବାକୁ ଯିବ ? କାହାଁକି ବୃଥାରେ ଅଦା ଖଟି ମରିବ ? ଏଇ ମୋ କଥା ବିଚାର କର, ବଡ଼ ଭାଇନାତ ପିତାଙ୍କ ପାଣିଏ ପ୍ରଧାନ ପୂଜକ—ତାଙ୍କର ତ ପିଲାପିଲି କେହି ନାହାନ୍ତି, ସବୁ ଖାଇବି ମୁଁ, କର୍ମଠ ହେବାର ମୋର ପ୍ରୟୋଜନ ?

ଅନିରୁଦ୍ଧ—ବୃଥା ଶ୍ରମ । ତମେ ଭାଇ ଚେଷ୍ଟା କଲେ ଗୁରୁଦେବ ଶନ୍ତୁଷ୍ଟ ହୁଅନ୍ତେ ।

ଭାର୍ଗବ— ନିଷ୍ଟୁର, ନିଷ୍ଟୁର କହିବ । ଗୁରୁଙ୍କୁ ସନ୍ତୁଷ୍ଟ କରିବା ଶିଷ୍ୟର ପ୍ରଧାନ ଓ ପ୍ରଥମ କର୍ତ୍ତବ୍ୟ । ତୁମେ ଭାଇ ପ୍ରାଣର ବନ୍ଧୁ ବୋଲି ତୁମକୁ ଏ ସବୁ ଗୋପନ କଥା କହିଲି—ଦୟା କରି କାହାରି ପାଖରେ ପ୍ରକାଶ କରିବ ନାହିଁ ।

ଅନିରୁଦ୍ଧ— ଆରେ ରାମ, ରାମ, ବନ୍ଧୁ କଥା ପର ପ୍ରକାଶ କରନ୍ତି ?

ଭାର୍ଗବ— ଭାଇ ଏହାଙ୍କର ନାମ କଅଣ ?

ଅନିରୁଦ୍ଧ— ଦେବଯାନୀ ।

ଭାର୍ଗବ—ଦେବଯାନୀ ! ଦେବଯାନୀ ! ! ସୁନ୍ଦର—ପ୍ରାର୍ଥିତ—ଅଦର-ବୋଳା ନାମ । ସବୁ ଠାରୁ ଏ କଣ ଭଲ ପାଅନ୍ତି ?

ଅନିରୁଦ୍ଧ—ଫୁଲ ଓ ଗୀତ ।

ଭାର୍ଗବ—ସକଳପ୍ରକାର ଫୁଲ ଅକ୍ଳେଶରେ ଯୋଗାଡ଼ କରିବି; କିନ୍ତୁ ଗୀତ, ଶିଖିବାକୁ ପଡ଼ିବ ଭାଇ !

ଅନିରୁଦ୍ଧ—ତୁମ ବୁଦ୍ଧି ଯିମିତି ପ୍ରଖର ଦେଖୁଛି, ଗୀତ ମଧ୍ୟ ଅକ୍ଳେଶରେ ଶିଖି ପାରିବ ହେ ।

ଭାର୍ଗବ—ଏ ଆଶ୍ରମରେ ତମେ ଏକା ଯୋଗେ ରହିଛ ଭାଇ । ସେ ଭିକ୍ଷୁକ ଯିମିତି ଗୀତ ଗାଇ ପାରନ୍ତି ଶୁଣିଲେ ଛାତିକା ହୋଇ ଯିବ । ତାଙ୍କ ଗାନରେ ଗଛରୁ ପତ୍ର ଝଡ଼ି ପଡ଼େ । ଆଜି ଯାଇ ତାଙ୍କୁ ଧରି ବସିବି—ଦୁଇ ଚାରି ଖଣ୍ଡ ଗୀତ ଶିଖାଇ ଦିଅ, ନ ହେଲେ ଜଳ ଗ୍ରହଣ କରିବି ନାହିଁ ।

ଅନିରୁଦ୍ଧ—ଭଲ ରୂପେ ଶିଖି ନେବ କିନ୍ତୁ ।

ଭାର୍ଗବ—ତାହା ତ ନିଶ୍ଚିତ, କିନ୍ତୁ ତମେ ଭାଇ ଏ ସବୁ ଗୋପନ ପରାମର୍ଶ ଦୟା କରି କାହାରି ଠାରେ ପ୍ରକାଶ କରିବ ନା । ମୁଁ କୃତକାର୍ଯ୍ୟ ହେଲେ ପିନାକପାଣିର ଦ୍ୱିତୀୟ ପୂଜକ ପଦ ତୁମ ପାଇଁ ଥୁଆ ରହିଲା ।

ଅନିରୁଦ୍ଧ—ସତେ ନା ?

ଭାର୍ଗବ—ଯଜ୍ଞୋପବୀତ ହାତରେ ଧରି ଶପଥ କରୁଛି, ଏ କଥାର ଅନ୍ୟଥା ହେବ ନାହିଁ ।

---

## ଚତୁର୍ଥ ଦୃଶ୍ୟ

[ ସ୍ଥାନ—ବିନାୟକଗାଣିଙ୍କ ପ୍ରଧାନ ମନ୍ତ୍ରୀ ଶମ୍ଭୁନାଥଙ୍କ ଅନ୍ତଃପୁର । କାଳ ଦ୍ୱିପ୍ରହର । ଚିନ୍ତାନ୍ୱିତା ଉମା ବସି ଝୁଟି ଭାଙ୍ଗୁଥିଲେ । ପ୍ରକାଣ୍ଡ ଫୁଲ ଚଙ୍ଗୁଡ଼ାଏ ବୋହି ଭାର୍ଗବଙ୍କୁ ପ୍ରବେଶ କରିବାର ଦେଖି ସେ କହିଲେ— ]

ଉମା—ଇଏ କଅଣ ଭାର୍ଗବ !

ଭାର୍ଗବ—ଦେଖୁଛ ଫୁଲ ଚଙ୍ଗୁଡ଼ା ପୁଣି ପଚାରୁଛ ?

ଉମା—କାହୁଁ ଆଣିଲ ?

ଭାର୍ଗବ—କହୁଁ ଦୂରରୁ ଭାଉଜ ! ଆଃ ପ୍ରାଣ ଯାଇ ଗଲା । ସେଥି ପୁଅ ଚଙ୍ଗୁଡ଼ାକୁ ଉଠାଇବା କ'ଣ କମ୍ ଶ୍ରମ ଭାବିଛ ? ସକାଳରୁ ତିନି କୋଶ ବାଟ ଧାଇଁ ଜଙ୍ଗଲ ଭିତରେ ପଶିଲି । କଣ୍ଟା ଝୁଞ୍ଚାରେ ଦେହ ଯାକ ଛିଡ଼ି ରକ୍ତାକ୍ତ ହୋଇଗଲା, ତେବେ ମଧ୍ୟ ଏ ଚମ୍ପା ମିଳୁନା । ବାସ ମିଳୁଛି ଗଛ ନାହିଁ । ମୁଁ କଣ ଛାଡ଼ିବା ପାତ୍ର ନୁହେଁ । ଖୋଜି ଖୋଜି ଏଠାକୁ ପାଇଲି । ପାଇଲାତ ପାଇଲି ସେଥି ପୁଅ କ'ଣ ଉଠିବାକୁ ଚାହେଁ ? ନିରୁପାୟ ହୋଇ ଶେଷରେ କାଟି ଆଣିଲି ।

ଉମା—ଏଥିରେ ହେବ କ'ଣ ?

ଭାର୍ଗବ—କାର୍ଯ୍ୟ କାରଣ ସମ୍ବନ୍ଧ ନ ଥିଲେ କାମ ହୁଏ ? କାମ ଅଛି ଭାଉଜ, କାମ ଅଛି ।

ଉମା—କାମଟା କଣ କହୁଲ ? ଖିଆ ନାହିଁ, ପିଆ ନାହିଁ, ଏତେବେଳ ଯାଏଁ ଦୌଡ଼ା ଦୌଡ଼ି କରିବା ପ୍ରୟୋଜନ ?

ଭାର୍ଗବ—ଛୁଟି ଦିନ ବୋଲି ଟିକିଏ ମଜଲ ମାରୁଥିଲି ଭାଉଜ ।

ଉମା—ନ ଖାଇ ନ ପିଇ ଖରାରେ ଧାଇଁ ବୁଲିବା ଭାରି ମଜଲ ନା!

ଏ ଫୁଲ ଗଛଟା ହେବ କଣ କହିଲ ?

ଭାର୍ଗବ—କହିବ ଭାଉଜ, କିନ୍ତୁ ଶପଥ କର କାହାରିକୁ କହିବ ନି ?

ଜମା—ଏସ କଥା ମୁଁ କେବେ କାହାରିକୁ କହେଁ ?

ଭାର୍ଗବ—ଉଁ ହୁଁ, ତୁମେ ଶପଥ କର ।

ଜମା—ଶପଥ କଣ ମ, ମୋ କଥା ବିଶ୍ୱାସ ହଉନି ?

ଭାର୍ଗବ—ବିଶ୍ୱାସ ହେଲେ ମଧ୍ୟ ତମେ ଶପଥ କର ନା ?

ଜମା—ସତ କହୁଛି ଏ କଥା କାହାରି କାନକୁ ଯିବ ନି ।

ଭାର୍ଗବ—ହାଃ, ହାଃ, ହାଃ, ଏଇଟା ଗୋଟିଏ ଶପଥ ହେଲା ? ଅଚ୍ଛା, ଆଜି ଯାହାକୁ ଇଚ୍ଛା କହି ପାର କିନ୍ତୁ ଭାଇନାକୁ କହିବ ନି ଶପଥ କର ?

ଜମା—ନା, ମୁଁ କହିବ ନି ।

ଭାର୍ଗବ—ତମେ ଶପଥ କରିବ ନି, ଅଚ୍ଛା ମୁଁ ଶପଥ ଦେଉଛି—ମୋ ରାଣ ଭାଉଜ, ଭାଇନାକୁ ଏ ବିଷୟ କିଛି କହିବ ନି ?

ଜମା—ନା, ମୁଁ ପ୍ରାଣ ଗଲେ ସୁଦ୍ଧା କହିବ ନି ।

ଭାର୍ଗବ—ଆମ ଋଷି କନ୍ୟା----

ଜମା—ଋଷି କନ୍ୟା ନା ଗୁରୁ କନ୍ୟା ?

ଭାର୍ଗବ—ଗୁରୁ ଶବ୍ଦଟା ଭାରି ଗୁରୁ ଭାଉଜ । 'ଗ'ରେ ହ୍ରସ୍ୱ ଉ ପୁଣି 'ର'ରେ ହ୍ରସ୍ୱ ଉ । କନ୍ୟା ଶବ୍ଦ ତ ଉଭୟଠାରେ ସମାନ ରହୁଛି । ସୁତରାଂ ଫୁଲ ପରି କୋମଳ କରିବା ପାଇଁ ଗୁରୁ ପରିବର୍ତ୍ତେ ଋଷି କହିବାଟା ଭଲ, କାନକୁ ମଧ୍ୟ ମିଠା ଲାଗିବ ।

ଜମା—ହୁଁ, ଏବେ ମିଠାର ସ୍ୱାଦରେ ପ୍ରୟୋଜନ ହେଲାଣି ? ବୁଝିଲି, ଦେବଯାନୀ ପାଇଁ ନା ?

ଭାର୍ଗବ—ହାଃ, ହାଃ, ହାଃ ସ୍ୱଜନ ! ତମେ ତ ମନ କଥା ଜାଣିପାର ଦେଖୁଛି । ସେ ଫୁଲ ଭାରି ଭଲ ପାନ୍ତି, ଏଣୁ ଖାଲି ଫୁଲ ନ ଆଣି ଡାଳ, ପତର, ଫୁଲ ଇମିତକ ଗଛଟାକୁ ମଧ୍ୟ ଘେନି ଆସିଲି ।

ଉମା—ବୁଦ୍ଧିମାନର କାମ କରିଛ । ଏବେ ଖୁସ ପିଅ କର ।

ଭାର୍ଗବ—ତା ହେବନି ସ୍ୱଜନ । ମୋ କାମଟି ତମେ ଆଗ କରି ନ ଦେଲେ ଜଳ ଗ୍ରହଣ କରିବ ନି ଶପଥ କରିଛି ।

ଉମା—କା ଠାରେ ?

ଭାର୍ଗବ—ମନେ ମନେ ।

ଉମା—କାମଟା କ'ଣ ?

ଭାର୍ଗବ—ଖଣ୍ଡିଏ ଗୀତ ଶିଖାଇ ଦେବାକୁ ହେବ ?

ଉମା—ଶବ୍ଦରୂପଟାଏ ମୁଖସ୍ଥ କରିବାକୁ ତ ବେଳ ମିଳୁନି, ଗୀତ ଶିଖିବ କେତେବେଳେ ?

ଭାର୍ଗବ—ଗୀତ ଶିଖିବା ଭାରି ସହଜ ଯେ ସ୍ୱଜନ । ଅନୁସ୍ୱାର ବିସର୍ଗ ଥାଏ ବୋଲି ନା ଶବ୍ଦରୂପ ଗୁଡ଼ା ଗଣ୍ଡଗୋଳ କରନ୍ତି । ଗୀତ ଥରେ ଟିପି ନେଇ ପାରିଲେ ଖଲାସ । ଗୋଟାଏ ଗୀତ ଗାଇ ଦିଅ ଟିପି ନେଇ ଠିକ ସିମିତ ଗାଇ ଦେବି ।

ଉମା—ସତେ ନା ?

ଭାର୍ଗବ—ପରଖ କର ।

ଉମା—ଅଚ୍ଛା, କେଉଁ ଗୀତଟା ଶିଖିବ ?

ଭାର୍ଗବ—ଏଇ, ଏଇଁ, 'ମିଳନ ସ୍ୱରର ମଧୁ ଅବସର' ।

ଉମା—ହୁଁ, ବେଶ ଧରିଛ । ଗୀତଟାର ଅନ୍ୟ କିଛି ମନେ ଅଛି ନା ?

ଭାର୍ଗବ—ଭଲ ପଦଟା ସିନା ମନେ ରହେ ସ୍ୱଜନ ।

ଉମା—ହୁଁ--ରହ ତମ ଭାଉଜ ଆସନ୍ତୁ ମିଳନ ରାତର ବ୍ୟବସ୍ଥା କରୁଛନ୍ତି ।

ଭାର୍ଗବ—ଭଉଜ, ତମେ ନା ମୋ ରାଣ ଖାଇଛ । ହଁ, ହୁଁ, ଚଢ଼ ପେଟ ମାରୁଛନ୍ତି ଭାଉଜ, ମୁଁ ଖାଇବନି ଶୋଇବି ।

ଉମା---ନା, ନା, ଶୋଇବା ପ୍ରୟୋଜନ ନାହିଁ, ମୁଁ କହୁଛି ଜହ୍ନବ ନ । ଅଚ୍ଛା ଗାଉଛନ୍ତି ଶୁଣ ।

ଭାର୍ଗବ---ଠିକଏ ରହ ଭାଉଜଙ୍କ ଲେଖମାଠା ପଢନ୍ତି ଆସେ ।

ଉମା---ନିଅ ଏହାତ ରହନ୍ତୁ ( ଲେଖମା ଦାନ )

ମାୟାବୀ ତବ ମାୟା ଜାଲ ସଖା ଶର ରୈଭମୟ ।
ସୁଖ ଦୁଃଖ ସବୁ ତମ ଦାନ ଦୋଳି ଶର ସହମୀୟ ।
କାହାର ବୁକୁରୁ ଲକତ ଝରାଇ,
କାହାର ହୃଆଁତର କୁସୁମ ଫୁଟାଇ,
ଭର ଯେତେ ଖେଳ ଶର ନରମଳ ସବୁ ସଖା ମୋହମୟ ॥
ଶର ବରହର ଅମା ନିଶା ଶେଷେ ତମ ଦେଖା,
ମିଳନ ରାତର ମଧୁ ଆରତର ଲଭିବା ଦୀପର ଶେଷ ରେଖା,
ତମେ ସଖା ଦେଇ ଦେଖା ଜୀବନ ଭର ମୋ ବରଣୀୟ ।

( ଭାର୍ଗବ ଲେଖିସାରି )

ଭାର୍ଗବ—ଦେଖିବ ଭାଉଜ ଚତୁଆ ଅଗତୁଆର ଉଚ୍ଚାର୍ ! ମୁଁ ପରା ଗାଇବ ? ଶୁଣିବ—ତମ ଭାଷାର ମଧ୍ୟ ସଂଶୋଧନ କର ଦେବ ।

ଉମା—ଦେଖେଁ ।

ଭାର୍ଗବ—ଶୁଣ ପ୍ରଭୁଷ ଗାଉଛନ୍ତି କି ନା ?

ହୁଁ ହୁଁ ହୁଁ ହୁଁ, ସା, ସା, ସା, ସା, ନ, ନ, ନ, ନ,
ଆ, ଆ, ଆ, ଆ, ମା, ମା

ମାୟାବନୀ ଭବ ମାୟା ଜାଲ ସଖି ନବ ଲୋଭମାୟ ।
ସୁଖ ଦୁଃଖ ସବୁ ଭ୍ରମ ଦଆ ବୋଲି ନର ସହମାୟ ।
କାହାର ବୁକୁରୁ ବକଭ ଝଂସଇ,
କାହାର ହୃଦେର କୁସୁମ ଫୁଟାଇ,
ଭବ ଯେତେ ଖେଳା ନର ନାଉମଳା ସକ୍ତ ସନ୍ଧି ମୋହମାୟ ।
ନର ବରହର ଅମା ନଶା ଶେଷ ଭମ ଦେଖା,
ମିଳନ ସଭର ମଧୁ ଅରଣ୍ୟର ଲଭିବା ଦୀପର ଶେଷ ରେଖା
ଉମେ ସଖି ଦେଖି ଦେଖି ଜୀବନ କର ମୋ ବରଣୀୟ ।
ଉମେ ସଖି ଦେଖି ଦେଖି
ଉମେ ସଖି ଦେଖି ଦେଖି ।

(ସହସା ଶମ୍ଭୁନାଥ ପ୍ରବେଶ କରି)

ଶମ୍ଭୁ---(ସ୍ୱଗତ) ଘର ଭୁଲି ଧୋବା ଘରେ ଅସି ପହଞ୍ଚିଲି ନା କଣ ।

ଧୁର୍ଗବ—ଉମେ ସଖି ଦେଖି ଦେଖି, ଉମେ ସଖି--।

ଶମ୍ଭୁ--(ପ୍ରହାର କରୁଁ କରୁଁ) ଉମେ ସଖି, ଉମେ ସଖି, ନେ ତୋର ଉମେ ସଖି । ପାଠଶାଠ ଚୁଲିକି ଦେଇ ଉମେ ସଖି ଉମେ ସଖି ନେ, ନେ, ନେ, ତୋର ଉମେ ସଖି (ପ୍ରହାର)।

—o—

## ପଞ୍ଚମ ଦୃଶ୍ୟ

[ଶୁକ୍ରାଚାର୍ଯ୍ୟଙ୍କ ଆଶ୍ରମ, କାଳ ପ୍ରଭାତ, ଶୁକ୍ର ବହସ୍ତରେ ହୋମରତ]

ଓଁ ଅଗ୍ନୟେ ପବମାନାୟ ସ୍ୱାହା
ଇଦମଗ୍ନୟେ ପବମାନାୟ ନମଃ ।
( ହୋମ ସମାପନାନ୍ତେ )
ଅଗ୍ନେନୟ ସୁପଥା ରାୟେ ଅସ୍ମାନ୍
ବିଶ୍ୱାନି ଦେବ ବୟୁନାନି ବିଦ୍ୱାନ୍
ଯୁୟୋଧ୍ୟସ୍ମଜ୍ଜୁହୁରାଣମେନୋ
ଭୂୟିଷ୍ଠାନ୍ତେ ନମ ଉକ୍ତିଂ ବିଧେମ ।
( ଧ୍ୟାନ ମଗ୍ନ )

( ଅନ୍ତରାଳରୁ କଚଙ୍କୁ ଆସିବାକୁ ଦେଖି ଦେବଯାନୀ )

ଦେବଯାନୀ—( ସ୍ୱଗତ )—କିଏ ଏହି ଜ୍ୟୋତିଷ୍ମାନ୍
ପୁରୁଷ ପ୍ରବର, ଦେଖି ଯାର କେଶପାଶ
ଲଜ୍ଜାରେ ଲୁଚଇ ମୁଖ
ଫଣି ପଦ୍ମ ଦଳ
ସଙ୍ଗରେ କମଳ ବୃନ୍ଦେ ।
କୋଟି ଚନ୍ଦ୍ର ସମ ପ୍ରଭା
ମୋହନୀୟ କମନୀୟ ଅତି
ତାର ଏହି ଜ୍ୟୋତି ।
ଇନ୍ଦୀବର ସମ ଅକ୍ଷି

ଚପଳ ବିଜୁଳି
ସଦା ଢଳ ଢଳ ।
ଅଜାନୁଲମ୍ବିତ ଭୁଜ
ବକ୍ଷ ସୁବିଶାଳ ।
କନ୍ଦର୍ପର ପ୍ରତିଛବି
ରମଣୀ ମୋହନ
କିଏ ଏହି ପୁରୁଷ ରତନ ?

କଚ--(ସ୍ୱଗତ, ଦେବଯାନୀଙ୍କୁ ଦେଖି )
ବିଧାତାର ଶ୍ରେଷ୍ଠ ସୃଷ୍ଟି
ନିଚ୍ଛଳା ସାଧନା
ଚିରକାମ୍ୟ ମନୋହରା
କିଏ ଏ ଲଳନା ?
କିଏ ଏହି
ଅପରୂପା ଅନୁପମା
ସ୍ୱପନ ସୁଷମା ?
ନିକଷ କଜ୍ଜଳ କଳା
ଆଖି ଢଳ ଢଳ
ଦେଖି ଲାଜେ ବନେ ପଶେ
କନ୍ଦସୀ ହରିଣୀ ଦଳ
କେଶ ପାଶେ କରେ ଖେଳା
ସହସ୍ର ଫଣିନୀ
କିଏ ଏହି ଚିତ୍ତ ବିଜୟିନୀ ?
କଟିତଟ ଦେଖି ଲାଜେ

ଯତ୍ନେମ ଜଉତ
ମୃଗ ଅର ଧାଏଁ ବନେ
ହୋଇ ଶଙ୍କାନ୍ୱିତ ।

ଶୁକ୍ରାଚାର୍ଯ୍ୟ—(ଧ୍ୟାନାନ୍ତେ ଆଖି ମେଲି ନବାଗତଥି ଦେଖି )
ସୁକଲ୍ୟାଣ !

କଚ—ଅଜ୍ଞାନ ତିମିରାନ୍ଧସ୍ୟ
ଜ୍ଞାନାଞ୍ଜନ ଶଳାକୟା
ଚକ୍ଷୁ ରୁନ୍ମୀଳିତଂ ଯେନ
ତସ୍ମୈ ଶ୍ରୀ ଗୁରବେ ନମଃ ।

ଶୁକ୍ରାଚାର୍ଯ୍ୟ—ହୁଅ ପୂର୍ଣ୍ଣ ମନସ୍କାମ
ହେ କଲ୍ୟାଣି,
କିବା ତବ ପ୍ରୟୋଜନ ?

କଚ—ଶିକ୍ଷା ଆକାଙ୍କ୍ଷ ଆସିଅଛି
ଶ୍ରୀଚରଣେ ପ୍ରଭୁ !

ଶୁକ୍ରାଚାର୍ଯ୍ୟ—ପରିଚୟ ?

କଚ—ବ୍ରହ୍ମସୁତ ଦୀନ ଦାସ ।

ଶୁକ୍ର—କାହାର ନନ୍ଦନ, ସୌମ୍ୟ !
କି ଗୋତ୍ର, ତୁମ୍ଭର ?

କଚ—ବୃହସ୍ପତି ସୁତ ଦାସ ।

ଶୁକ୍ର—ବୃହସ୍ପତି ସୁତ, ବୃହସ୍ପତି ସୁତ
କିବା ପ୍ରୟୋଜନ ହେବ ?

କଚ—ବିଦ୍ୟାର୍ଥୀ ଅଧୀନ ।

ଶୁକ୍ର—ଅସମ୍ଭବ, ଅସମ୍ଭବ,
ଲଂଘିତ ଅକ୍ଷମ ଶୁକ୍ର
ଜାଣେଣ କବା କଥ ?
କଚ—ମତିମନ୍ !
ପାଇଅଛି ଆଶୀର୍ବାଦ
ପୂରିବ କାମନା !

ଶୁକ୍ର—ଯୁବକ !
ଦେବତାର ଛଳନା ସମ୍ଭାର
କରିଣ ସମ୍ବଳ
ଆସିଅଛ ମୋର ପାଶେ
ବିଦ୍ୟା ଶିକ୍ଷା ଆଶେ ?
କଚ—ଗୁରୁ ଦେବ ! ଗୁରୁ ଦେବ .
ଛଳନାର ବନ୍ଧୁ ମାନ
ନ କରି ଆଶ୍ରୟ
ଆସି ଅଛି ଶୁଦ୍ଧ ଚିତ୍ତେ
ତବ ପାଶେ ପ୍ରଭୁ !

ଶୁକ୍ର—ଯୁବକ, କାହିଁ ଏହି ପ୍ରବଞ୍ଚନା
କରିଛ ଉଦ୍ଧୁଦ୍ଧ ?
କଚ—ଜୀବନ ପ୍ରେରଣା ମୋର
ଆଣି ଅଛି ମୋତେ ।

ଶୁକ୍ର—କିନ୍ତୁ ବତ୍ସ !
ଅସମ୍ଭବ ! ନ ହୁଏ ସମ୍ଭବ,
ନ ପାରିବ ଶିକ୍ଷା ଦେଇ

ଦୁର୍ଯୋଗ ସମୟେ,
ଦେବାସୁର ମଧ୍ୟେ ଘୋର
ଲାଗିଛି ସମର
ହୁଏ ତ ବା ସୃଷ୍ଟି ହେବ ଲୋପ ।
କଚ—ଶିକ୍ଷାର୍ଥୀ ଦୁଆରେ ତବ
କରୁଣା ଭିଖାରୀ ।
ଶୁକ୍ର—ଅସମ୍ଭବ କି ହୁଏ ସମ୍ଭବେ ?
( ଦେବଯାନୀ ପ୍ରବେଶ କରି )
ଦେବଯାନୀ—ପିତା !
ଶୁକ୍ର—କନ୍ୟା ମୋର ! ମାତା !
ମାଗୋ ! କିବା ପ୍ରୟୋଜନ !
ଦେବଯାନୀ—ପିତା ! ଦେବତା ଲାଂଛିତ ତମେ
ଦୈତ୍ୟ କୁଳ ଗୁରୁ
ଦ୍ୱାରେ ତବ ଉପନୀତ
ଦେବ ଗୁରୁ ସୁତ,
ସାମାନ୍ୟ ଶିକ୍ଷାର୍ଥୀ ରୂପେ ।
ବିଜୟ ମାଳିକା ହାତେ
ଜୟ ଲକ୍ଷ୍ମୀ ଦ୍ୱାରେ
ତଡ଼ି ଦେବା ସମୀଚୀନ ?
ଭାବି ଦେଖ ମନେ ?
ଶିକ୍ଷାର୍ଥୀକୁ ଶିକ୍ଷାଦାନ
କର୍ତ୍ତବ୍ୟ ମହାନ୍,
ଅତୁଳ କୀରତ ତବ

ଲଜ୍ଜୋଷିତ ହେବ
କି ଜଗତେ !
ଦବା ପର ମୂକ୍ଷ୍ମ ଦେଖି
କହିବେ ସକଳେ
ଦୈତ୍ୟ ଗୁରୁ ସମାସୀନ
ଊର୍ଦ୍ଧ୍ୱ ଊର୍ଦ୍ଧ୍ୱ ବହୁ ଊର୍ଦ୍ଧ୍ୱ
ଦେବତା ଗୁରୁର ।
ଶୁକ୍ର—ସତ୍ୟ, ସତ୍ୟ, ସତ୍ୟ, ମାତା !
ସୁକଲ୍ୟାଣ ସୌମ୍ୟ କଚ !
ଶିଖାଇବ ଯାହା ଅଛି
ଜ୍ଞାନ ଭଣ୍ଡାର ମୋର ।
ଦେଇ ନ ପାରିବ ବସ୍ତ
କଠୋର ସାଧନା ବଳେ
ପାଇ ଅଛି ଯାହା,
ମୃତ ମନ୍ତ୍ର ସଞ୍ଜୀବନୀ
କି ରୂପେ ପ୍ରସ୍ତୁତ ହୁଏ
ଜୀବନ ଅମୀୟ
ତାର ପ୍ରକରଣ ବିଧି ।

(ପଟ ପତନ)



# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

(ସ୍ଥାନ-ଦୈତ୍ୟପତି ବୃଷପର୍ବାଙ୍କ ଅନ୍ତଃପୁର ସ୍ଥିତ ବିଶ୍ରାମ ଭବନ। କାଳ-ପ୍ରହର ଅଧିକ ପ୍ରଭାତ, ଶର୍ମିଷ୍ଠାଙ୍କୁ ତାଙ୍କ ହାତରେ ଦେଖି ଦୈତ୍ୟପତି ଉଦ୍‌ଗ୍ରୀବ ହୋଇ କହିଲେ )

ବୃଷପର୍ବା—ଏଠି ଯେ ମା ମୋର କାହିଁ ଥିଲୁ ? ତୋର ପାଇଁ କେତେ କ୍ଷଣ ହେଲା ଜଗି ବସିଛି ଯେ ମା !

ଶର୍ମିଷ୍ଠା—କାହିଁକି ବାବା ?

ବୃଷ—ବଡ ଉଚ୍ଛୁର ହୋଇ ଯାଉଛି ପରା ? ଆଜି ଅଭାବିତ ଅତର୍କିତ ରୂପେ ସ୍ୱର୍ଗପୁର ଆକ୍ରମଣ କରିବ ମା ? ନିତ ନିତ ପ୍ରହାରେ ଆକ୍ରାନ୍ତ ହୋଇ ଦେବକୁଳ ସଜାଗ ଥାନ୍ତି । ଆଜି ଅବସର ହେବ ମା ଯହିଁରେ ସେମାନଙ୍କ ମନରୁ ଆକ୍ରମଣ ଆଶଙ୍କା କମ୍ପିତ କମି ଯାଏ, ଆତ୍ମରକ୍ଷାର କାହିଁର ଶୈଥିଲ୍ୟ ଘଟେ ?

ଶର୍ମିଷ୍ଠା—ବାବା, ଦିନରାତି ହଣାହଣି କଟାକଟି ଛଡା ତମ ମନରେ ଆଉ କିଛି ଭାବନା ସ୍ଥାନ ପାଏ ନା, ନା ବାବା ?

ବୃଷ—ଏ ମହା ସମରର ଶେଷ ନ ହେବା ଯାଏ ଆଉ ଯେ କିଛି ଭାବି ପାରେ ନା ମା । ଭାବିବାର ଅଧିକାର ମଧ୍ୟ ନାହିଁ ଯେ । ଦୈତ୍ୟକୁଳ ଉଦ୍‌ଗ୍ରୀବ ହୋଇ ମୋର ଅପେକ୍ଷା କରୁଛନ୍ତି ... ଲ ତୋହର ପାଇଁ ମୋ ଉଚ୍ଛୁର ହେଲା ନା ?

ଶର୍ମିଷ୍ଠା—ମୋର ଅପରାଧ ବାବା ? ମୁଁ ତ ଯାଉଥିଲି ପିତାଙ୍କ ପଦ ଶିର

ମନ୍ଦିରକୁ ପୂଜା ଦେବା ପାଇଁ ତମର ମଙ୍ଗଳ କାମନା ନେଇ ।

ବୃଷ—ମା ନ ହେଲେ ସନ୍ତାନ ପାଇଁ ଏତେ ଦରଦ ବାଲେ କିଏ ରେ କଲ୍ୟାଣି ! ତୋ'ର କଲ୍ୟାଣ କାମନା ଯେ ମୋର ଅଭେଦ୍ୟ ବର୍ମ ମା ।

ଶର୍ମିଷ୍ଠା--କିନ୍ତୁ ବଡ଼ ଭୟ ହୁଏ ବାବା ?

ବୃଷ---ପିନାକପାଣିର ଆଶୀର୍ବାଦ, ଦୈତ୍ୟଗୁରୁର ଶୁଭାଶିଷ, ତୋର ମଙ୍ଗଳ କାମନା, ତୋର ପିତାଙ୍କୁ ଦେହ ଅଜର ଅମର ଅପଯ୍ୟ କରି ରଖିଛନ୍ତି ମା । ତୋର ଭୟ, ତୋତେ ଦେଖି ଆସେ ଆସେ ନିଜରେ ସେ ପଛ ଘୁଞ୍ଚା ଦେବ ଯେ । ତୁ ଯେ ଦୈତ୍ୟରାଜର ଆଦରିଣୀ କନ୍ୟା ତାର ଶୁଭକାଂକ୍ଷିଣୀ ଜନନୀ ।

ଶର୍ମିଷ୍ଠା—ଦେବ ସଙ୍ଘ ବଡ଼ କୌଶଳୀ ବଡ଼ ଚତୁର କିନା ? ସେଥିପାଇଁ ବଡ଼ ଆଶଙ୍କା ।

ବୃଷ—ଆଶଙ୍କା ? ଦୈତ୍ୟରାଜ କନ୍ୟାର ମନରେ ଆଶଙ୍କାର ସ୍ଥାନ କାହିଁ ହାତ ଅଙ୍ଗୁଳି ଚାଳନରେ ସ୍ୱର୍ଗମର୍ତ୍ତ୍ୟ ପାତାଳ ଆନ୍ଦୋଳିତ ହୋଇ ଉଠିବ ପଲକରେ ନିମେଷରେ । ଆସେ ମା ! କଥାରେ କଥାରେ ବଡ଼ ଡେରି ହେଲାଣି ।

(ପିତାଙ୍କୁ ଉଦ୍ୟତ ଦେଖି)

ଶର୍ମିଷ୍ଠା—ପିନାକପାଣିର ପ୍ରସାଦୀ ଫୁଲ ।

ବୃଷ—ଦେ ମା ଦେ, ଏହାହିଁ ତ ମୋର ଅକ୍ଷୟ କବଚ (ପ୍ରସାଦୀ ଫୁଲ ମଥାରେ ନେଇ) ଆସେ ମା ତେବେ ?

ଶର୍ମିଷ୍ଠା—ଆସନ୍ତୁ ବାବା ! ଜୟ ଲକ୍ଷ୍ମୀ ଅଙ୍କଗତ ହୁଅନ୍ତୁ । ପିନାକପାଣି ସବୁ ଅକଲ୍ୟାଣ ଦୂର କରନ୍ତୁ । କିନ୍ତୁ ଚଞ୍ଚଳ ଫେରି ଆସିବେ ନ ଆସିବା ଯାଏ ବଡ଼ ଚିନ୍ତାନ୍ୱିତା ରହିବି ବାବା ।

ବୃଷ—ଦୁଶ୍ଚିନ୍ତା ତୋ ମନରେ ସ୍ଥାନ ପାଇପାରେ ନା ମା ! ତୁ ଯେ ଦୈତ୍ୟକୁଳର ଚିରକଲ୍ୟାଣମୟୀ ଜୟଶ୍ରୀ ।

( ବୃଷପର୍ବାଙ୍କ ପ୍ରସ୍ଥାନ ଓ ସଖୀ ଉଜଳାର ପ୍ରବେଶ )

ଶର୍ମିଷ୍ଠା—ଫେରିଲୁ ସଖି ।

ଉଜଳା—"ଧନୀର ଆଖିରେ ସନ୍ଦେହର ଛାୟା ଦିନ ରାତି ଲାଗିଥାଏ" ଏ କଥାଟା ବଡ଼ ମିଛ ନୁହେଁ ।

ଶର୍ମିଷ୍ଠା—ମୋ ଅପରାଧ ?

ଉଜଳା—ତା ଦେହରେ ଦୁଇଟି ମଥା ଲାଗିଛି ଯେ ଏତେ ବଡ଼ କଥାଟାଏ କହିବ ? ଚଳନ୍ତ ଜୀବନ୍ତ ମଣିଷଟାକୁ ଦେଖି ମଧ୍ୟ ପଚାରୁଛ ଫେରିଲୁ ସଖି ! ସଖି ଫେରି ନାହିଁତ କଣ ଫେରିଛି ତାର ଅଶରୀରୀ ଆତ୍ମାଟା ?

ଶର୍ମିଷ୍ଠା—ତୋ କଥା ବୁଝିବା ଭାର ।

ଉଜଳା—ଧନୀ ବୁଝିଲେ ଗରିବ କଥା ଗରିବ ମରିବେ କିଆଁ ?

ଶର୍ମିଷ୍ଠା—ଯା ପାଗଳି ! ତୋତେ ମୁଁ କେବେ ପର ଭାବେଁ, ହତାଦର କରେ ?

ଉଜଳା—ଭାବିବାକୁ ବା କହିବାକୁ ଡ଼ର କେତେ ?

'ଅଧ୍ୟୁ ମନର ପ୍ରସାଦ ଯେତେ
ସୁଖ ଠାରୁ ଦୁଃଖ ଜନ୍ମାଏ ତେତେ'

ତୁମେମାନେ ସବୁ ଅଧ୍ୟୁ ମନିଆ ଲୋକ ନା ? ସେଥିପାଇଁ ଡ଼ର ମାଡ଼େ ।

ଶର୍ମିଷ୍ଠା—ଯା ପୋଡ଼ା ମୁହିଁ । ଅସଲ କଥାଟା କହନା, ଦେଖା ହେଲା ?

ଉଜଳା—ନିଶ୍ଚୟ ଦେଖା ନ କରି ଉଜଳା ଫେରିବ ।

ଶର୍ମିଷ୍ଠା—ଦେବଯାନୀ କଣ କରୁଥିଲେ କି ?

ଉଜଳା—ପ୍ରିୟ ଅତିଥିର ଶ୍ରମ ଲାଘବ ପାଇଁ ଭାରି ବ୍ୟସ୍ତ ଥିଲେ

କେବଳ ରାଜକନ୍ୟାର ଦୂତୀ ବୋଲି ଦୟା କରି ପଲକ ପାଇଁ ସାକ୍ଷାତ ମିଳିଲା ।

ଶର୍ମିଷ୍ଠା—ପ୍ରିୟ ଅତିଥି ! କିଏ ସେ ?

ଉଜଳା—ପରିଚୟ ପାଇ ନାହିଁ କିନ୍ତୁ ଆଖିରେ ଦେଖି ଆସିଲି ଅପରୂପ, ଅନୁପମ ।

ଶର୍ମିଷ୍ଠା—ପ୍ରେମରେ ପଡ଼ିଲୁ ସଖି ?

ଉଜଳା—ବାମନର ଚନ୍ଦ୍ର ଧରିବା ସାଧ ହତାଶାରେ ମରିବା ପାଇଁ ସିନା । ଉଜଳା ଏତେ ବୋକା ନୁହେଁ । ଦେଖି ଆସିଲି ସେଠାରେ ଯୁଗଳ ମିଳନର ଆଉ ବଡ଼ ବେଶି ଡେରି ନାହିଁ। ଏଠାରେ ଗୋଟିଏ ଭିଡ଼ ଗଲେ ଉଜଳା ମନ ଉଜ୍ଜ୍ୱଳ ହୋଇଯାଏ ।

ଶର୍ମିଷ୍ଠା—ପୋଡ଼ା ମୁହଁ ! କିଏ ସେ ଜାଣି ଆସିଲୁ ନା ?

ଉଜଳା—ତାହାକୁ ପଚାରିବି ? କି ବୋଲି ବା ପଚାରିବି ? ଋଷି କନ୍ୟାଙ୍କୁ ପଚାରିଲି, ଏତେ ଦିନ ହେଲା ପ୍ରାସାଦକୁ ଯାନ୍ତି ନାହିଁ କିଆଁ ? ହସି ହସି ଉତ୍ତର ଦେଲେ, ବଡ଼ ବେଶି କାମ ପଡ଼ୁଛି, ସେଥିପାଇଁ ଯାଇ ପାରୁ ନାହିଁ ଉଜଳା । ସମୟ ପାଇବା ମାତ୍ରେ ସଖୀ ପାଖରେ ହାଜର ହେବି ।

ଶର୍ମିଷ୍ଠା—କହିଲୁ ନାହିଁ ଗୁରୁଦେବଙ୍କ ତ ନିତ୍ୟମିତ କାମ—ଏତେ କାଳ ସମୟ ମିଳୁଥିଲା ଆଉ ଆଜି କାଲି ମିଳୁ ନି କିଆଁ ?

ଉଜଳା—ଜଣା କଥା ପର ମୁହଁରୁ ଶୁଣିବା ଭଳି ପ୍ରବୃତ୍ତି ମୋର ନାହିଁ । ଦେଖୁଛି ଏକର ଘାମ ପଡ଼ିଲେ ଆନର ଦେହରେ ବାରି ଧାର । ଜଣକ ଆଖି ପାଣି ଖସିଲେ ଅପରର ବକ୍ଷେ ରକ୍ତରୁ କଲିଜା କଟା ରକ୍ତ ସ୍ରୋତ । ହସଖେଳ ନେଇ ଋଷି କନ୍ୟା ବେଶ ମଜ୍ଜି ରହିଛନ୍ତି । ପଲକ ବିରହ—ଦୁହିଙ୍କ ପାଇଁ ଅସହ, ଅବହ ।

ଶର୍ମିଷ୍ଠା—କଚ୍ଛୁ ଖବର ନ ଦେଇ ଚାଲ କାଲି ସନ୍ଧ୍ୟାରେ ଯାଇ
ଦେଖି ଆସିବା ।

ଉଜଳା—ଯିବ, ଚାଲ କିନ୍ତୁ ସାବଧାନ ପାଦରେ ଗୋଡ଼ ଦେବ
ନାହିଁ ।

ଶର୍ମିଷ୍ଠା—ଦୂର ପାଗଳି !

ଉଜଳା—ପାଗଳୀ ନୁହେଁ ରାଜକନ୍ୟା । ସତ କହୁଚି ଯେଉଁ ରୂପ,
ସେଥିରେ ଋଷିକନ୍ୟା କାହିଁ ଖେଳ, ରାଜକନ୍ୟା ତ
ରାଜକନ୍ୟା ।

ଶର୍ମିଷ୍ଠା—ତୁ କଣ୍ଠସ୍ଥ ପ୍ରେମମନ୍ତ୍ର ପଢ଼ୁଚୁ ।

ଉଜଳା—'ପେଟରେ ଥୋଇ ଓଦା କନା
ସ୍ୱପନ ଦେଖୁଚି ହୀରା ସୁନା'
ଯିବ, ଚାଲ ସଙ୍ଗରେ ଯିବି କିନ୍ତୁ ସାବଧାନ ସଖି !
ପ୍ରେମ ଫାନ୍ଦ ଛେଡ଼େ ବସ୍ଥି ରହିଅଛି
ପଦେ ପଦେ ଏହି ଧରାରେ
କେତେ କେତେ କିଏ ଧରା ପଡ଼ି ପଡ଼େ
ଫୁଲ ଶର ବେଢା ଭାରରେ ।
—ହୁଁ, ସମ୍ଭାଳି ଥିବ ସଖି ।



## ଦ୍ୱିତୀୟ ଦୃଶ୍ୟ

[ସ୍ଥାନ—ଶୁକ୍ରାଚାର୍ଯ୍ୟଙ୍କ ଆଶ୍ରମର ଏକାଂଶ—ଫୁଲ ମାଳାଟିଏ ହାତରେ
ଧରି ଚିନ୍ତାମଗ୍ନା ଦେବଯାନୀ]

ଦେବଯାନୀ—(ସ୍ୱଗତ) ଦିନ ନାହିଁ ରାତି ନାହିଁ
କ୍ଳାନ୍ତ ସଂସାର ।

ଗୁରୁସେବା ଅମ୍ଳାନ ବଦନେ;
ଅପୂର୍ବ ଅପୂର୍ବ ସଖୀ!
କଠୋର ସାଧନା।
ଫଳେ ଫଳିଲ ତବ ଜୟ
ଜୀବନ ଶଳଭ
କି ଶିକ୍ଷାର ଅଶେ
ଧାଇଁ ଅଛ ଦଗ୍ ବିଦଗ୍ ଜ୍ଞାନଶୂନ୍ୟ ହୋଇ।
କୁସୁମ କୋମଳ ପ୍ରାଣ
ପାରିବ କି ସହି ଏତେ କ୍ଲେଶ।

(ସଖୀ କଲ୍ୟାଣୀ ଦେବଯାନୀଙ୍କୁ ଫୁଲମାଳ ହାତରେ ଚିନ୍ତାନ୍ୱିତା ଦେଖି ଫୁଲ ତୋଳୁଁ ତୋଳୁଁ ଗାଇଲେ)

କଲ୍ୟାଣୀ — ଦକ୍ଷିଣା ପବନ ଝରକା ପଥରେ
କହେ କାର କଥା କହ।
କାନେ କାନେ ଶ୍ୱାସ ସଞ୍ଚରି
ଜାଗେ କାର ଅନ୍ତରଙ୍ଗ ॥
ନୀଳ ଜ୍ୟୋତ୍ସ୍ନା ଉଛୁଳା ପବନେ,
ଉଡ଼େ ଦଳେ ଦଳେ ଝଟଣ ଝଟଣ ଝଣେ,
ଖେଳି ଲୁଚକାଳି ଯାଏ କଏ ଭୁଲି
ଜୀବନେ ଘନାଇ ମୋହ ॥

ଦେବଯାନୀ — ଜୀବନରେ ତୋର ଇମିତ ଭରି କଏ ମୋହ ଦେଲା
ସଖି! ଯା ପାଇଁ ଏ ମର୍ମଭୁଦ ଅନୁଯୋଗ?

କଲ୍ୟାଣୀ — ଅନୁଯୋଗ ମୋର ନୁହେଁ ସଖି, ମୁଁ ତ ଦର୍ପଣ ମାତ୍ର।
ଦେଖିଲେ ଛବି ଦିଶିବ, ଇଚ୍ଛା ଥାଏ ଦେଖି ପାର।

ଦେବଯାନୀ — ମୋର ପ୍ରୟୋଜନ ନାହିଁ।

କଲ୍ୟାଣୀ – ପ୍ରୟୋଜନ ଯଥେଷ୍ଟ ରହୁଛି । ଭୟ ପଛରେ ଦର୍ପଣ ଛବି ଅଛ କାହାର ଆଖିରେ ପଡ଼ ଯାଏ ।

ଦେବଯାନ – "ଯା ମନ ଯିମିତ
ତା ଭାବ ସିମିତ" ।

କଲ୍ୟାଣୀ – "ବଡ଼ ବଡଙ୍କୁ ଉତ୍ତର ନାହିଁ
ଭାବନା ବେଦନା ସେଥିକି ପାଇଁ"
ଏ ଫୁଲ୍ ମାଳଟି କାହୁଁ ଆଣିଲ୍ ସଖି !

ଦେବଯାନ – ଅଣି ନାହିଁ ଆପେ ଆପେ ଆସିଛି ।

କଲ୍ୟାଣୀ—କାହାଙ୍କ ହାତରୁ ?

ଦେବଯାନ—ବୁଦ୍ଧିମତୀ !

କଲ୍ୟାଣୀ—ସାବଧାନ ଋଷି କନ୍ୟା, ଅଧିକ ଅଗ୍ରସର ହେଲେ ବିପଦରେ ପଡ଼ିବ ।

ଦେବଯାନ—ଅଗ୍ରସର ହେଲେ ?

କଲ୍ୟାଣୀ—ପ୍ରେମର ପଥରେ । ପଥ ବଡ଼ ପିଛିଲ; ଗୋଡ଼ ଖସି ପଡ଼ିଲେ ପଳାଇବା ବାଟ ଥିବ ନାହିଁ ।

ଦେବଯାନ—କଲ୍ୟାଣି ! ମୋର ମନ ଗଣ୍ଠିରେ । ସୀମା ରକ୍ଷି କଥା ଭାଷା କହିବାକୁ ଭଲ ।

କଲ୍ୟାଣୀ—ରାଗ ହେଲା ? ହେବାହିଁ କଥା । ରାଗ, ଅନୁରାଗ, ମାନ, ଅଭିମାନ, ମିଳନ, ବିରହ ଏବେ ଏବେ ଆସି ପ୍ରେମ କୁଞ୍ଜରେ ଭିଡ଼ ଯାନ୍ତି ନା । ଭୁଲ କରନା ସଖି ! ଦେବ କୁଳ ଶର ଛଳନା ପ୍ରିୟ, ପ୍ରାଣଟି ନେଇ ପ୍ରସ୍ଥାନ କଲେ ମର୍ମନ୍ତୁଦ ବେଦନାର ପରସୀମା ରହିବ ନାହିଁ ।

( ଶର୍ମିଷ୍ଠାର ଇଙ୍ଗିତରେ ସଖିଦଳ ଗାଇ ଗାଇ ପ୍ରବେଶ କଲେ

ମନା କଲେ କି ଗୋ ମନ ମାନେ ।
ନିତି ତାରା ରୂପ ଜାଗେ ପ୍ରାଣେ ॥
କେତେ ଉଚ୍ଛାସର ସିନ୍ଧୁର ଆଶା,
ଅଳୁହା ଯା କିଛି ବୁକୁର ଭାଷା,
ବିକଶି ଉଠିବ ଫୁଲ ସବୁ
ଫଗୁଣ ସଂଜରେ ପିକ ଗାନେ ॥
ଲୋକ ଲାଜ ଭୟ ସବୁ ଯିବ,
ଗୁପତ କଥାଟି କାହିଁ ଥିବ,
ବାହୁର ବନ୍ଧନେ ଶର ପ୍ରିୟ
ରଖିଥିବେ ବାନ୍ଧ ପ୍ରୀତି ଟାଣେ ॥

( ସଖିମାନଙ୍କ ସହସା ପରିହାସରେ ଦେବଯାନୀ ଅପ୍ରସ୍ତୁତା ହୋଇ ରହିଥିବା ବେଳେ ଦୈତ୍ୟରାଜ କନ୍ୟା ଶର୍ମିଷ୍ଠା ପ୍ରବେଶ କରି )

ଶର୍ମିଷ୍ଠା—ସଖୀ ଯେ ଆଜ ଢାଲ ଭୂମିର ଫୁଲ, ବ୍ୟାପାର କଣ ?

ଦେବଯାନୀ—ସୁପ୍ରଭାତ ! ଆଜ କା ମୁହଁ ଚାହିଁ ଉଠିଥିଲି, ତେଣୁ ଅମା ନିଶାରେ ପୂନେଇ ଚନ୍ଦ୍ରର ଦେଖା ମିଳିଲା ।

ଶର୍ମିଷ୍ଠା—ମନକୁ ପଚାର ।

( ଉଜଳାର ଇଙ୍ଗିତରେ ସଖି ଦଳ ପୁଣି ଗାଇ ଉଠିଲେ )

ଶର ପ୍ରିୟତମ ସାଥି ।
ତମମୀୟ ଯାର ମଧୁଝରି ରୂପ ଦେଖି ମନ ଉଠେ ମାତି ॥
ସାଥିହରା ବୁଲୁଥିଲି ପଥ ଚାହିଁ,
ନିରଜନରେ ଅଖି ଲହେ କେହି ନାହିଁ,
ସେ ହୃଦୟେ ଅସି ମର୍ମ ଖୋଲିଲ ଯେ କଲା ସଫଳ ରାତି ।

ଶତ ବାଧା ଭାଙ୍ଗି ଛଳେ ଛଳେ,
ଯେଉଁ ପଥେ ପଥ ନାହିଁ ମିଳେ,
ସେ ପଥେ ଆସିଲ ଯେ ପ୍ରେମ ଦେବତା ବୁକୁରେ ଦେବାକୁ ଘାତ ॥

ଦେବଯାନୀ—ଅଯଥା ମୋତେ ଆକ୍ରମଣ କରିବା ପାଇଁ ଏ ଉଦ୍ଭଟ ବାହିନୀର ଅଭିଯାନ କାହିଁ ରାଜ କୁମାରୀ ?

ଶର୍ମିଷ୍ଠା—ଅପରାଧ କଲେ ଫଳ ଭୋଗିବାକୁ ହୁଏ ଋଷି କନ୍ୟା ! କହତ ଏତେ ଦିନ ପ୍ରାସାଦକୁ ଯାଇ ନାହଁ କାହିଁ ?

ଦେବଯାନୀ—କଣ କରିବ ସଖି ! କମା ଅବସର ନାହିଁ । ତମେ କ ଭାବ ତମକୁ ଦେଖି ମୋ ପ୍ରାଣ କମ ବ୍ୟାକୁଳ ହୁଏ ?

ଶର୍ମିଷ୍ଠା—ଆଜି କାଲି ଏତେ କଣ ଗୁରୁତର କାମ ପଡୁଛି ? ଗୁରୁ ଦେବଙ୍କର ନିୟମିତ କାର୍ଯ୍ୟର ବ୍ୟତିକ୍ରମ ଅସମ୍ଭବ, ତେବେ ମଧ୍ୟ ତମ ଅବସରର ଏତେ ଅଭାବ କାହିଁ ? ପୂର୍ବେ ତ ଏପରି ନ ଥିଲା ? ତେବେ ନବାଗତଥିବା ଶୁଭାଗମ ହୋଇ-ଥିଲେ ସେ ଅନ୍ୟ କଥା ? ଅତିଥି ପୂଜ୍ୟ, ଦେବତା ଅଧିକ ପ୍ରିୟ ।

ଦେବଯାନୀ—ଅତିଥି ପାଇଁ ମୋର ବେଳେ ମାତ୍ର କଷ୍ଟ ନାହିଁ, ବରଂ ତାଙ୍କ ଠାରୁ ଯଥେଷ୍ଟ ସାହାଯ୍ୟ ମିଳେ ।

ଶର୍ମିଷ୍ଠା—ଓଃ, ନବାଗତଥିବା ଶୁଭାଗମ ଘଟିଛି—ତେବେ, ଅନୁମାନ ମୋର ମିଥ୍ୟା ନୁହେଁ; ଅତିଥି ତରୁଣ, ସୁନ୍ଦର, ମନୋରମ ନିଶ୍ଚୟ ? (ନେପଥ୍ୟରୁ କଚ ଡ଼ାକିଲେ)

କଚ—ଦେବଯାନୀ !

ଦେବଯାନୀ—ସୁସ୍ୱାଗତ । (କଚ ପ୍ରବେଶ କରି ଅପରିଚିତା ଦଳକୁ ଦେଖି ଥମକି ଛିଡ଼ା ହେଲେ)

ଓଃ, ପରିଚୟ ନାହିଁ ? ଏ ଦୈତ୍ୟରାଜଙ୍କ କନ୍ୟା ଶର୍ମିଷ୍ଠା, ମୋର ପ୍ରିୟ ବାନ୍ଧବୀ । ଏ କଚ, ପିତାର ପ୍ରିୟତମ ଶିଷ୍ୟ, ମୋର ସତୀର୍ଥ ।

( ଶର୍ମିଷ୍ଠା ପ୍ରଣତି ହେଲେ, କଚ ଆଶୀର୍ବାଦ କଲେ )

କଚ—ଆପଣଙ୍କ ଦର୍ଶନ ପାଇ ଧନ୍ୟ ହେଲି ଦେବୀ !

ଶର୍ମିଷ୍ଠା—ପ୍ରିୟ ବାନ୍ଧବୀର ପ୍ରିୟ ବନ୍ଧୁଙ୍କୁ ଦେଖି ସୌଭାଗ୍ୟ ମଣୁଛି । କାଲି ସଖୀଙ୍କୁ ପ୍ରାସାଦକୁ ଯିବା ପାଇଁ ଆମନ୍ତ୍ରଣ କରିବାକୁ ଆସିଥିଲି; ଅଣାକରେ ପ୍ରିୟ ବାନ୍ଧବଙ୍କୁ ମଧ୍ୟ ପାଇ ପାରିବି ।

କଚ—ଧନ୍ୟବାଦ । ଚେଷ୍ଟାର ତ୍ରୁଟି ହେବ ନାହିଁ ଦେବି ! କିନ୍ତୁ ଗୁରୁଦେବଙ୍କ ଆଦେଶ ସାପେକ୍ଷ ।

ଶର୍ମିଷ୍ଠା—ସେ ବ୍ୟବସ୍ଥା ମୁଁ କରିଯିବି । ଆସ ସଖୀ । ଗୁରୁ ଦେବଙ୍କୁ ଦର୍ଶନ କରିବି ।

(ସକଳଙ୍କ ପ୍ରସ୍ଥାନ)

**ପଟ କ୍ଷେପଣ**



## ତୃତୀୟ ଦୃଶ୍ୟ

[ସ୍ଥାନ—ଦୈତ୍ୟଗୁରୁ ଶୁକ୍ରାଚାର୍ଯ୍ୟଙ୍କ ଆଶ୍ରମର ଏକାଂଶ । ଶ୍ରାନ୍ତ କ୍ଳାନ୍ତ କଚ ନଦୀକୂଳରେ ଶୋଇ ରହି ଭାବୁଥିଲେ । ]

କଚ— (ସ୍ୱଗତ)

ଦିନ ଦିନ କରି
ଅତୀତର କୋଳେ ଗଲେ ଚଳି

କେତେ ମାସ
କେତେ ବର୍ଷ
ଯୁଗ ଯୁଗାନ୍ତର
ତଥାପି ଭୁଲିଲି ନାହିଁ
ଅନ୍ତର ବାସନା ।
ପଡ଼ ମନେ ସରଗର
ସୁଷମା ସମ୍ଭାର
ବିଭ୍ରାନ୍ତ କରଇ ମୋରେ
ପଲେ ଅନୁପଲେ ।
କେତେ ଦିନ କେତେ ଯୁଗ
ସହିବି ବିଚ୍ଛେଦ ଜ୍ୱାଳା
ଅମର ପୁରୀର ।
ନାହିଁ ଶୁଣେ
ଅନନ୍ଦ ବିହ୍ୱଳ ଗୀତ
ଦାନବ କଣ୍ଠରେ;
ବିଜୟ ମାଳିକା ଧରି
ଫେରନ୍ତି ଗୌରବେ ।
ଅଛି କି ସେ ମନୋରମ
ନନ୍ଦନ କାନନ ?
ଫୁଟଇ କି ପାରିଜାତ
ଆପଣା ଚେରେବ ?
ବସେ କି ସୁଧର୍ମା ସଭା
ବୈଜୟନ୍ତ ପୁରେ
ପୁଲକ ଉଚ୍ଛ୍ୱାସେ ?

କ୍ଷଣେ କ୍ଷଣେ ବାଜେ କାନେ
ସମ୍ମିଳିତ ଦେବ କଣ୍ଠେ
ପ୍ରାଭାତିକ ସାମବେଦ ଗାନ ।
ପଡ଼େ ମନେ ସୁର ଲଙ୍କାର,
ସହାସ ମୁଖର ଛବି ।
ବହେ କି ନିର୍ମ୍ମଳା ଜଳା
ମନ୍ଦାକିନୀ ନଈ
ଗାଇ କୁଳୁ କୁଳୁ ଗାନ ?
କିଏ ଜାଣେ
ହୁଏ ତ ବା ନାଚୁଛନ୍ତି
ନେସଥିରେ ଏବେ
ଶୋଣିତ ଲହରୀ ।
ପ୍ରତି କ୍ଷଣେ ଧାଏଁ ପ୍ରାଣ
ସୁଦୂର ଅତୀତେ ।
କନ୍ତୁ ନିଷ୍ପାପ
ନିଷ୍ପାପ ମୂର୍ତ୍ତି ।
ଜନକ ଚରଣ ସ୍ପର୍ଶି
କରିଛି ଶପଥ
ନ ଫେରିବି ସ୍ୱର୍ଗପୁରେ
ବିଫଳ ମାନସେ ।
ପ୍ରତି ପଲେ, ହୃଦୟ ମନ୍ଦିରେ ଉଠେ
ଅପାର ବିଷାଦ ।
ଭାଗ୍ୟ ବଳେ ମିଳିଛନ୍ତି
ଦେବଯାନୀ ଅଗ୍ନିଶିଖ ରୂପା

ଦୈତ୍ୟଗୁରୁ ସୁତା ।
କମନୀୟ ସ୍ନେହ ଯାର
ବିଜୁଳି ଝଲକ ପ୍ରାୟେ
ଜଗେ ଭାଣ୍ଡ ହୃଦୟ ମନ୍ଦିରେ ;
ବିନାଶଇ କ୍ଳାନ୍ତ-ତମୋରାଶି ।
ଅମାନିଶା ବକ୍ଷ ଭେଦ
ଜାଳେ ସେହୁ ପ୍ରଦୀପ୍ତ ଆଲୋକ
ମୋର ହୃଦୟ ମନ୍ଦିରେ ।
ସହିବ କି ଏ ସୁଖଟି
ଅଭାଗା କପାଳେ ?

( ଦେବଯାନୀ ପ୍ରବେଶ ହୋଇ )

ଦେବଯାନୀ—ମଳିନ କି ହେତୁ ସଖା ?

କଚ—ମ୍ଳାନିମା ପଳାଏ ଦୂରେ
ତବ ଛାୟା ପାତେ ।

ଦେବଯାନୀ—ସ୍ତୋକ ବାକ୍ୟ ଭୁଲିବାର
ପାତ୍ରୀ ନୁହେଁ
ଶୁକ୍ରାଚାର୍ଯ୍ୟ ସୁତା

କଚ—ସତ୍ୟ ଦେବି !
କିନ୍ତୁ ମୋର ନାହିଁ କ୍ଳାନ୍ତି
ନାହିଁ ଅବସାଦ ।
ଦିନରାତି ରହିଅଛି
ଆନନ୍ଦ ବିଭୋର
ତବ ଅନୁଗ୍ରହେ ।

ଦେବଯାନ – ମିଥ୍ୟା ସଖୀ ମିଥ୍ୟା କଥା
ଗୋପନ ବେଦନା ତବ
ପ୍ରସ୍ଫୁଟ ବଦନ କମଳେ,
ଏଠି କି ମିଳିବ ସଖା !
ସ୍ୱର୍ଗ ଲଳନାର
ସହାସ୍ୟ ସୁନ୍ଦର ମୁଖ ?
ମିଳିବ କି ନନ୍ଦନର କୁସୁମ ସୁରଭି ?
କଚ – ତହୁଁ ବେଶି ମିଳିଅଛି
ଅଭାଗା କପାଳେ ।
ତବ ସ୍ନେହ ମମତାର କଥା
ସ୍ମରିବାକୁ ସରଗ ବାରତା
ବିସ୍ମରଣ ହୁଏ ଯେ
ପ୍ରତି ପଦେ ପଦେ ।
ଧନ୍ୟ ଦେବ ! ଧନ୍ୟ ତମେ
ଧନ୍ୟ ତବ ଆତଥ୍ୟ ସତ୍କାର ।
ଦେବଯାନ – ହେ ଅତିଥି !
ଦୀନର କୁଟୀରେ ମିଳେ
କୁବେର ଭଣ୍ଡାର ?
କଚ – ସପ୍ତ ସ୍ୱର୍ଗ କରଣ ମନ୍ଥନ
ଉଦ୍ଭୂତା ଯେ ମୂର୍ତ୍ତିମତୀ
ଲକ୍ଷ୍ମୀ, ତାଙ୍କ ପୁରେ
ଅଭାବ କି ରହେ କହ ?
ଅକିଞ୍ଚନ ହୁଏ ମହାଜନ ।
(ଭାର୍ଗବ ପ୍ରବେଶ କରି)

ଦେବଯାନୀ — ସଖା !

ଭାର୍ଗବ — ଗୁରୁଦେବ ଆପଣଙ୍କୁ ଡ଼ାକୁଛନ୍ତି ।

ଦେବଯାନୀ — ମୋତେ ?

ଭାର୍ଗବ — ନା, ତାଙ୍କୁ; (ତାଙ୍କ ପ୍ରସ୍ଥାନ) ଦେବଯାନ :

ଦେବଯାନୀ — ଜଣେ ଯୁବକ । ସଂଯତ ହୁଅ ?

ଭାର୍ଗବ — ମୋର ଅପରାଧ ?

ଦେବଯାନୀ — ବୁଝିବା ଶକ୍ତି ଥିଲେ ଦଣ୍ଡ ଦିଅନ୍ତି । ନିର୍ବୋଧ ମୋ ନାମ ଧରି ଡାକିବାର କ ଅଧିକାର ଅଛି ।

ଭାର୍ଗବ — ବୁଝା ଗଲା ମା ! ମୁଁ ଭାବିଥିଲି କଣ ନା କଣ ଗୋଟାଏ ଅଘଟନ ଘଟିଗଲା । ନାମ ଧରି ଥରେ ଡ଼ାକି ଦେଲି ଯେ ବେଦର ସୂକ୍ତ ସବୁ ଅଶୁଦ୍ଧ ହୋଇଗଲା ନା କଣ ? ଆଉ ଏଇ ଯେ ଗୁରୁମନ୍ତ୍ର ଜପିବା ଭଳି କଚ ପ୍ରଭୁ ଦିନରେ ହଜାର ଥର ଦେବଯାନୀ ଦେବଯାନୀ କରି ଡ଼ାକୁଛନ୍ତି; ସେଥିରେ ବିନ୍ଦୁ ମାତ୍ର ଦୋଷ ଘଟେ ନା, ନା ?

ଦେବଯାନୀ—ତାଙ୍କର ସେ ଯୋଗ୍ୟତା ଅଛି ।

ଭାର୍ଗବ—ମୋର ନାହିଁ କିଆଁ ? ସେ ମଧ୍ୟ ଗୁରୁଙ୍କ ଛାତ୍ର ମୁଁ ମଧ୍ୟ ଗୁରୁଙ୍କ ଛାତ୍ର । ତଫାତ୍ କଣ ?

ଦେବଯାନୀ—ସେ ପାର୍ଥକ୍ୟ ଉପଲବ୍ଧି କରିବାର ଶକ୍ତି ତମର ନାହିଁ ।

ଭାର୍ଗବ—ହଃ, ନାହିଁ । ଜାଣନ୍ତି ନା ସେ ଗୀତ ଗାଇ ପାରନ୍ତି, ମୁଁ ନିଜ ରଚନା ନିଜେ ସୁର ଦେଇ ନିଜେ ଗାଇ ପାରେ, ବଡ଼ କିଏ, ସିଏ ନା ମୁଁ ? ମୋର ଗଳା ତାଙ୍କ ଠାରୁ

ସଦ୍ଭାବ୍ରେ ଗୁଣ ଭଲ, ଶୁଣିବେ—[ଗାଇଲା] 'ମିଳନ ସଭର ମଧୁ ଅଧରର' ।

ଦେବଯାନ—ଭାର୍ଗବ ! ତମକୁ ଅଜ୍ଞାନ ବୋଲି ଯଥେଷ୍ଟ ମାର୍ଜନା କରୁଛି । ଏଣିକି ସାବଧାନ ସଂଯତ ନ ହେଲେ ଆଶ୍ରମ ପ୍ରବେଶ ନିଷିଦ୍ଧ ହେବ ।

ଭାର୍ଗବ—ହେଲେ ମୋର ଭାରି କ୍ଷତି ହେବ, ମାଧବାଗ୍ରହୀଙ୍କ ଅନୁରୋଧରେ ଆସିଥିଲି । ନ ହେଲା ଆସିବ ନାହିଁ ? ମୁଁ କଣ ଖୋଲିଖାଏ ଖୋଲି ଦେଇ ବସି ପାରିବ ନାହିଁ, ଭାବୁଛ ? ମୁଁ କାହାର ଅନୁଗ୍ରହ ଭିକାରୀ ନୁହେଁ, ମୋର ପିନାକପାଣିର ମନ୍ଦର ଅଛି ଜାଣ ତ ?

ଦେବଯାନ—ଖୁବ୍ ଜାଣେ କନୁ ସାବଧାନ କରି ଦେଉଛୁ, ଏଠାକୁ ଆସିବ, ଖେଳିବ, ଗୀତ ଗାଇ ଗାଇ କାହାରିକି ଅଯଥା ବିରକ୍ତ କଲେ ଯଥୋଚିତ ଦଣ୍ଡ ପାଇବାକୁ ପଡ଼ିବ । (ପ୍ରସ୍ଥାନ)

ଭାର୍ଗବ—ଓଃ ହୋ ହୋ ଭାରି ଗରବ—ତଟ ଦନ ଘଡି ଫୁଲ ଆଣି ଗୀତ ଗାଇ ଗାଇ ଗୋଡ଼ ଘଷୁଛୁ ବୋଲି ସମସ୍ତେ କରିବେ । ଦେଖ ତୋର ଗୁରୁକନ୍ୟା; ରୂପଟା ଦେଖି ଦୟା କରୁଥିଲି—ଗରବ ଦେଖିଲି ପୋଡ଼ି ଦେବି । ମୁଁ କି କମ୍ ଘିଅଣିଆ ?

( ଅନିରୁଦ୍ଧ ପ୍ରବେଶ କରି)

ଅନିରୁଦ୍ଧ—କିଏ ନାହିଁ କଲା କି ?

ଭାର୍ଗବ—ରାଜ ଭଇ, ମୋ ପିଇ ପୋଡ଼ି ଯାଉଛି ।

ଅନିରୁଦ୍ଧ—କଅଁ ମ ?

ଭାର୍ଗବ—ଦେଖ ସେ ଦିନ ତମେ କହୁଥିଲ, ଦେବଯାନି ଫୁଲ ଆଉ

ଗୀତ ଭଲ ପାନ୍ତି । ଢେର ଖଣ୍ଡିଏ ଫୁଲ ମାଳ ଦଅ, ମୁଁ ଫୁଲତ ଫଲ୍, ଗଛ, ପତର,ଡାଳ,ସବୁ ଆଣି ଦେଲି--ମାଙ୍କଡ଼ ଢଙ୍ଗ ବଦାସ୍ୟ କଲେ । ସହିଲି, କେବଳ ଗୁରୁକନ୍ୟା ବୋଲି । ଗୀତ ଗାଇଲି ଗଧ ଭଳି ଆଶ୍ରମରେ ପାଟି କରନା କହିଲେ ତୁନି ହେଲି । ଆଜ୍ଞା ନାମ ଧର ଡ଼ାକବାରୁଁ ରାଗ କେତେ ? ତୃଗା କ୍ଷେ ମା, ଠିକ୍ ରଣଚଣ୍ଡୀ । ଅଥଚ କଚ ମହାପ୍ରଭୁ ଯେ ଦିନରେ ହଜାର ଥର ଦେବଯାନୀ, ଦେବଯାନୀ କହୁଛନ୍ତି ତାଙ୍କ ଅପରାଧନାହିଁ । ରହନା ଦଣ୍ଡାକୁ ଯାକ ନିପାତ କରୁଛନ୍ତି ।

ଅନିରୁଦ୍ଧ — କିପରି ?

ଭାଗବ — ଅରେ ଭାଇ ତମେମାନେ କିଛି ଖବର ରଖ ? କାଲି ରାତିରେ ମହାରାଜ ଗୋପନ ମନ୍ତ୍ରଣା କରୁଥିଲେ, ଜାଣ ? ମନ୍ତ୍ରୀ, ସେନାପତି, କୋଷାଧ୍ୟକ୍ଷ ଛଡ଼ା ପିମ୍ପୁଡ଼ିଟାଏ ଯିବାର ମଧ୍ୟ ବାଟ ନ ଥିଲା । ସେଥିରେ କଣ ସ୍ଥିର ହେଲା ଜାଣ ? ବିଦେଶୀ କେତେ ଦୈତ୍ୟପୁରୀକୁ ଆସିଲେ ତତ୍-କ୍ଷଣାତ୍ ମୁଣ୍ଡ କାଟ ।

ଅନିରୁଦ୍ଧ — ପିମ୍ପୁଡ଼ି ଯିବାର ବାଟ ନ ଥିଲେ ହେଲେ ତମ ଭଳିଆ ବିରାଟ କାୟ ମହାପୁରୁଷ ସେ ଖବର ପାଇଲେ କିପରି ?

ଭାର୍ଗବ — ବୁଦ୍ଧି ଥିଲେ ଦିନକୁ ରାତି, ରାତିକୁ ଦିନ କରି ହୋଇ ଯାଏ । ଏଇଟା ଅତି ସହଜ କଥା । ତମ ବୁଦ୍ଧି ଶୁଦ୍ଧି ବଡ଼ କାମ ନୁହଁ । ଏହାତ ଅଜଣା ନାହିଁ ଯେ ଜଳରୁ ଥାଇ ଡାକ ଦେଲେ ଦୂର ଦୂରାନ୍ତକୁ ଶୁଭେ । ଆମ ରାଜ ପ୍ରାସାଦ କେତେ ଉଚ୍ଚ, ତହୁଁ ଉଚ୍ଚ ପ୍ରାସାଦ ମାଳିକ ମହାରାଜା । ତାଙ୍କ ଗୁପ୍ତ ପରାମର୍ଶ ପ୍ରକାଶ ନ ପାଇଲେ, ପାଇବ ତମ

ଆମ କୁଡ଼ିଆ ଘରର କଥା ? ସେନାପତିଙ୍କ ବନ୍ଧୁ କହ, ତୋଷାମଦୀଆ କହ, ସ୍ୱପର ତାଙ୍କ ଡାହାଣ ହାତ-ଅଧିକନ୍ତୁ ସେନାପତି ତା ପୁଅକୁ ପୋଷ୍ୟପୁତ୍ର କରି ନେଇ ଛନ୍ତି-ବନ୍ଧୁ, ସଖା ଭୃତ୍ୟ ସବୁ ସିଏ । ସେନାପତି ପାରୁ ଶୁଣି ସେ ତା ପୁଅ ସୁଧନ୍ୱାକୁ କହିଲା, କେଉ ଅଛୁ, ବିଦେଶୀ ଧରି ପାରିଲେ ପୁରସ୍କାର ମିଳିବ । ତା ପୁଅ ତ ମୋ ପ୍ରାଣର ବନ୍ଧୁ, ମୋତେ ନ କହି ରହନ୍ତି କିମିତି ? ଯାଉଛୁ ଅଜ ସେନାପତିଙ୍କୁ କହି ଦେବ-କେଉଁଠାରୁ ଏକ କେତେଜଣ ଆସି ଏଠାରେ ଭିଡ଼ ରହିଛନ୍ତି ।

ଅନିରୁଦ୍ଧ — ଗୁରୁଦେବଙ୍କ ଅଣିତ ଉପରେ ଅତ୍ୟାଗ୍ରହ କରିବ ଅଧିକାର ଯେ କାହାରି ନାହିଁ ଜାଣ ତ ?

ଭାର୍ଗବ — ସାଥିରେ କହେଁ, ତମ ବୁଦ୍ଧି ଶୁଦ୍ଧି ସବୁ ଲୋପ ପାଇଛନ୍ତି ? ଗୁରୁଦେବଙ୍କୁ ଜଣାଇବା ପ୍ରୟୋଜନ ? ବଗାଲଣ୍ଠା ଗୋରୁ ନେଇ ଯାଉଥିବା ବେଳେ ଜଙ୍ଗଲରେ ବାମ ହାସଲ କଲ ତ କୁଅ କା କରିବ କି ।

ଅନିରୁଦ୍ଧ — ଏଥିରେ ତମ ଲାଭ ?

ଭାର୍ଗବ — ଏହୁ ଶନିଗ୍ରହକୁ ବିଦାୟ ନକଲେ ମୋ ଆଶା କେବେ ମେଣ୍ଟିବ ଭାବିଛ ?

ଅନିରୁଦ୍ଧ — ପିମ୍ପୁଡ଼ିର ଡେଣା ହୁଏ
ବିନାଶର ପାଇଁ ।

( ପଟ କ୍ଷେପଣ )



## ଚତୁର୍ଥ ଦୃଶ୍ୟ

[ ସ୍ଥାନ – ଦୈତ୍ୟ ସେନାପତି ଶଂଖନାଦଙ୍କ ମନ୍ତ୍ରଣା କକ୍ଷ, କାଳ ମଧ୍ୟାହ୍ନ, ସେନା ନାୟକ ବିରୂପାକ୍ଷ ସହ ପରାମର୍ଶ ରତ ]

ଶଂଖନାଦ—ଅବଶ୍ୟ କର୍ତ୍ତବ୍ୟ ସ୍ୱୀକାର କରେ ବିରୂପାକ୍ଷ, କିନ୍ତୁ ସମ୍ବାଦ ଯଦି ମିଥ୍ୟା ହୁଏ ?

ବିରୂପାକ୍ଷ—ନମିତ ଶିରରେ ଦଣ୍ଡ ଗ୍ରହଣ କରିବି ସେନାପତି !

ଶଂଖ—କେବଳ ତମେ ଏକା ଦଣ୍ଡିତ ହେବ ନାହିଁ ବିରୂପାକ୍ଷ ! ତମ ସଙ୍ଗେ ସଙ୍ଗେ ମୁଁ, ଏକା ମୁଁ କାହିଁକି, ଏଥିରେ ସଂଶ୍ଳିଷ୍ଟ ପ୍ରତ୍ୟେକଙ୍କର ସର୍ବନାଶ ଅନିବାର୍ଯ୍ୟ । ସୁତରାଂ ଆଗ ପଛ ନ ବିଚାରି କାମ କରିବା ମଙ୍ଗଳକର ନୁହେଁ, ବୁଦ୍ଧିମତ୍ତାର ପରିଚୟବି ମଧ୍ୟ ନୁହେଁ ।

ବିରୂ—ମୁଁ ଠିକ୍ ଜାଣେ ସମ୍ବାଦଦାତା ମିଥ୍ୟାବାଦୀ ନୁହନ୍ତି ।

ଶଂଖ—ତାଙ୍କ ନାମ ପ୍ରକାଶରେ ତମର ଏତେ ଦ୍ୱିଧା, ଏତେ ସଂକୋଚ କାହିଁକି ?

ବିରୂ—ତାଙ୍କ ନାମରେ ଆପଣଙ୍କ ପ୍ରୟୋଜନ ? ଆପଣ କଣ ମୋତେ ବିଶ୍ୱାସ କରି ପାରୁ ନାହାନ୍ତି ?

ଶଂଖ—ତମକୁ ବିନ୍ଦୁମାତ୍ର ଅବିଶ୍ୱାସ କରେନା, କିନ୍ତୁ ତମେ ଯେ ପର ମୁହଁରେ ଝାଳ ଖାଇ ଆସିଛ ।

ବିରୂ---ମୁଁ ଜାଣେ ସେନାପତି, ସେ ଦୈତ୍ୟପତିର ଆଶ୍ରିତ, ଅନୁଗୃହୀତ ।

ଶଂଖ---ଆଶ୍ରୟ ଓ ଅନୁଗ୍ରହର ମୂଲ୍ୟ କେଇ ଜଣ ଦିଅନ୍ତି ବିରୂ-ପାକ୍ଷ ? ତମେ ଜାଣ, ନବୀନ ରାଜଶକ୍ତିର କୁଟିଳତା

ଗହ୍ୱରକୁ ପ୍ରବେଶ କରିବା ପାଇଁ, ଅସୁର ଅନେକ ସମୟ ଲଢିବ ତମକୁ । ଜାଣ ବରୂପାକ୍ଷ ! ଯେଉଁମାନେ ଦୈତ୍ୟ-ପତିର ସମକ୍ଷରେ ସାରମେୟ ପରି ନତ ପାଦ ଲେହନ କରି ଉଚ୍ଚାସନ ଅଧିକାର କରିଛନ୍ତି, ସେହିମାନେ ହିଁ ସୁଯୋଗ ପାଇଲେ, ଅବଶ୍ୟ ପରୋକ୍ଷରେ ଏପରି ଅକଥ୍ୟ ଭାଷାରେ ତାଙ୍କୁ ବଦ୍ରୂପ କରନ୍ତି, ଯା ଏକା ବେଳକେ ଅଶ୍ରାବ୍ୟ । ସୁତରାଂ ଆଶ୍ରୟ, ଅନୁଗ୍ରହର କଥା ଛାଡ । ପ୍ରଥମ ବରୁଣ୍ଡି ଅସ୍ତ୍ର ଗୋପନ ପଦ୍ମମର୍ଦ୍ଦର ସଂବାଦ ସେ ଜାଣିଲେ କିପରି ?

ବରୂ---କାହାରି ଠାରୁ ଶୁଣି ଥିବେ, ଲୋକ ମୁଖରୁତ କଥାର ପ୍ରଚାର । ସେ ପରିଷ୍କାର କହୁଛନ୍ତି ବୃହସ୍ପତି ସୁତ କଚ ବହୁ ଦିନ ହେଲା ଆସି ଗୁରୁଦେବଙ୍କ ଶିଷ୍ୟତ୍ୱ ଗ୍ରହଣ କରିଛନ୍ତି । ଗୁରୁଦେବଙ୍କର ସେ ଅତି ପ୍ରିୟ ସ୍ନେହାସ୍ପଦ ଶିଷ୍ୟ ।

ଶଂଖ---ଏଥିରେ ତ ପ୍ରମାଣ ହୁଏନା ବରୁପାକ୍ଷ ! ଯେ ସେ ସଞ୍ଜୀ-ବନୀ ଶିକ୍ଷା ପାଇଁ ଧାଇଁ ଆସିଛନ୍ତି ।

ବରୂ---ଆପଣ ପ୍ରବୀଣ—ଆପଣଙ୍କୁ ଉପଦେଶ ଦେବା ସମିଚୀନ ନୁହେଁ । କିନ୍ତୁ ଟିକିଏ ଭାବି ଦେଖନ୍ତୁ ସେନାପତି, ଏକ ସଞ୍ଜୀବନୀ ବଦ୍ୟା ଭିନ୍ନ ସ୍ୱର୍ଗରେ କେଉଁ କଥାର ଅଭାବ ଯେ ଦେବଗୁରୁ ସୁତ ସ୍ୱେଚ୍ଛାରେ ପିତୃ ଶତ୍ରୁର ଶିଷ୍ୟତ୍ୱ ଗ୍ରହଣ ପାଇଁ, ଏ ଦୈତ୍ୟପୁରୀକୁ ଧାଇଁ ଆସିବେ ?

ଶଂଖ---ସଂଜୀବନୀ ବଦ୍ୟା ଭିନ୍ନ ଅନ୍ୟ କିଛି ମଧ୍ୟ ଥାଇ ପାରେ ତ ?

ବରୁ---ଥାଇ ପାରେ ନା ସେନାପତି ! ସହଜ ଲଭ୍ୟ ବସ୍ତୁ ପାଇଁ ଏତେ ଆବେଗ, ଏ ଅପୂର୍ବ ସାଧନାରୁ ପ୍ରୟୋଜନ ସମ୍ଭବ କି ?

ଶଂଖ—ଯୁକ୍ତି ସଂଗତ କଥା ସ୍ୱୀକାର କରେଁ, ଅଚ୍ଛା ଆଜି ତେବେ ଦୈତ୍ୟପତିଙ୍କ ଗୋଚର କରିବ; ଦେଖେଁ ସେ କଣ ଆଦେଶ କରନ୍ତି ।

ବରୁ—କ୍ଷମା କରନ୍ତୁ ସେନାପତି ! ଏଥିରେ ହିତକର ଅହିତ ହେବ ।

ଶଂଖ—ତେବେ ତାଙ୍କ ଅଗୋଚରରେ ।

ବରୁ—କ୍ଷତି କଣ ?

ଶଂଖ—ଏହା ଯେ ସମ୍ପୂର୍ଣ୍ଣ ଅନ୍ୟାୟ, ଅଧର୍ମ, ପାପ ।

ବରୁ—ବନ୍ଧୁ ମାନ ନୁହେଁ ସେନାପତି !

ଶଂଖ—ରାଜ ଶକ୍ତିର ଅଜ୍ଞାତରେ ?

ବରୁ—ଅଜ୍ଞାତରେ ନୁହେଁ, ପ୍ରକାରାନ୍ତରେ ଜ୍ଞାତ ସାରେ ।

ଶଂଖ—ଜ୍ଞାତ ସାରେ ?

ବରୁ—ନିଶ୍ଚୟ, ରାଜା ଯେଉଁ ସମଷ୍ଟିର କେନ୍ଦ୍ରୀଭୂତ ଶକ୍ତି, ତାଙ୍କ ପ୍ରଦତ୍ତ ସେହି ଶକ୍ତିର ଅଂଶଧାରୀ ଆମ୍ଭେ, ଏକଥା ଅସ୍ୱୀକାର କରି ଚଳେ ନାହିଁ । ଆମ୍ଭଙ୍କୁ ତ ଅଜଣା ନାହିଁ, ରାଜା ଦୈତ୍ୟଗୁରୁଙ୍କର ଆଦେଶ ଅନ୍ଧ ଭଳି ଅକ୍ଷର ମାନି ଚାଲନ୍ତି; ଏହା ମଧ୍ୟ ସ୍ୱତଃସିଦ୍ଧ ଗୁରୁଦେବଙ୍କ ପ୍ରିୟତମ ଶିଷ୍ୟର ପାଦରେ କଣ୍ଟାଟିଏ ମଧ୍ୟ ବିନ୍ଧି ହେବାକୁ ଦେବେ ନାହିଁ, ସେ । ତାଙ୍କ ଏ ଦୁର୍ବଳତାକୁ ପ୍ରଶ୍ରୟ ନ ଦେଇ ତାଙ୍କରି କଲ୍ୟାଣ ପାଇଁ, ଦୈତ୍ୟ ଜାତିର କଲ୍ୟାଣ ପାଇଁ ଦୈତ୍ୟପୁରର କଲ୍ୟାଣ ପାଇଁ ତାଙ୍କ ଅଗୋଚରରେ କାମ କରିବା ନିଷ୍ପାପ କର୍ତ୍ତବ୍ୟ ଛଡ଼ା ଆଉ କିଛି ନୁହେଁ ସେନାପତି !

( ଦୂତର ପ୍ରବେଶ )

ଦୂତ—ପ୍ରଭୁ ! ପିନାକପାଣିର ପୂଜକଙ୍କ ଭାଇ ଦର୍ଶନପ୍ରାର୍ଥୀ ?

ଶଂଖ—ମୋ ଠାରେ ପ୍ରୟୋଜନ ?

ଦୂତ—କହନ୍ତି ଗୋପନୀୟ ସଂବାଦ ଅଛି

ଶଂଖ—ନେଇ ଆସ (ଦୂତର ପ୍ରସ୍ଥାନ) । ସହସା ଏ ଜଣ ଗୋପନୀୟ ସମ୍ବାଦ ନେଇ ଧାଇଁ ଆସିଲେ ବାତୁଳପରି ! କିଛି ଯେ ବୁଝି ପାରୁ ନାହିଁ ।

( ଭାର୍ଗବର ପ୍ରବେଶ)

ସୁସ୍ୱାଗତ ! କି ଆଦେଶ ?

ଭାର୍ଗବ—ଗୋପନରେ କହିବ ସେନାପତି ।

ଶଂଖ—ସେନାନାୟକଙ୍କ ଠାରେ ସେନାପତିର କିଛି ଗୋପନୀୟ ନାହିଁ, ସ୍ୱଚ୍ଛନ୍ଦେ କହି ପାରନ୍ତି ।

ଭାର୍ଗବ—ଯୁଦ୍ଧ ସମ୍ବନ୍ଧୀୟ କଥା କି ନା ?

ଶଂଖ—ତେବେ ତ ଶୁଣିବାର ତାଙ୍କ ସମ୍ପୂର୍ଣ୍ଣ ଅଧିକାର ଅଛି । ନିର୍ଭୟରେ କହି ପାରନ୍ତି କିନ୍ତୁ ଜାଣି ରଖିଥାନ୍ତୁ ସମର ସମ୍ବାଦ ମିଥ୍ୟା ହେଲେ ଗୁରୁତର ଦଣ୍ଡ ଅପରିହାର୍ଯ୍ୟ ।

ଭାର୍ଗବ—ସେ କଥା କି ମୁଁ ଜାଣେ ନା ? ନ ଜାଣି ନ ଶୁଣି ମିଛଟାଏ କହିବା ପାଇଁ ଧାଇଁ ଆସିଛି ଭାବନ୍ତି ? ସ୍ୱର୍ଗରୁ ବୃହସ୍ପତି ସୁତ କଚ ଆସି ଏଠି ଲୁଚି ରହିଛି ।

ଶଂଖ—ସେଥିରେ କ୍ଷତି କଣ ?

ଭାର୍ଗବ—ବିଦେଶୀ କେହି ଦୈତ୍ୟପୁରକୁ ଆସିଲେ ତତକ୍ଷଣାତ ମୁଣ୍ଡକାଟ ।

ଶଂଖ—କିଏ କହୁଛି ?

ଭାର୍ଗବ—କାଲି ମହାରାଜଙ୍କ ମନ୍ତ୍ରଣା ଭବନରେ ଏହା ସ୍ଥିର ହୋଇଛନ୍ତି ପରା ?
ଶଂଖ—ସାହୁଁ ମୁଁ ତ କିଛି ଜାଣେ ନାହିଁ ।
ଭାର୍ଗବ—ତୁବ ଜାଣନ୍ତି, ତେବେ ଜାଣନ୍ତୁ—କେବଳ ପୁରସ୍କାରଟି କାକେ ନେବା ପାଇଁ ଉଦାର ସାଜୁଛନ୍ତି ।
ଶଂଖ—ପୁରସ୍କାର !
ଭାର୍ଗବ—ହଁ, ଲକ୍ଷ ମୁଦ୍ରା କମ ନୁହେଁ ବାବା, ଏକଂ, ଦଶଂ, ଶତଂ, ସହସ୍ରଂ, ଅଯୁତଂ, ଲକ୍ଷଂ । ମୋଟେ କଣ ମୂର୍ଖ ପାଇଛନ୍ତି ?
ଶଂଖ—ନା ପଣ୍ଡିତେ । ସତ କହୁଛି ମୁଁ କିଛି ଜାଣେ ନାହିଁ ।
ଭାର୍ଗବ—ଖୁବ୍ ଜାଣନ୍ତି, ବେଶ୍ ଜାଣନ୍ତି, ଆପଣ, ମନ୍ତ୍ରୀ, ମହାରାଜ ଥାଇ କାଲି ଗୋପନ ପରାମର୍ଶ ହେଉଥିଲା ।
ଶଂଖ—ତେବେ ଆପଣ ଜାଣିଲେ କିମିତି ?
ଭାର୍ଗବ—ବୁଦ୍ଧି ଅଛି ସେନାପତି ବୁଝେ ଅଛି, ଭାଇନା ମଲେ ମୁଁ ପିନାକପାଣିର ପ୍ରଧାନ ପୂଜକ ହେବି, ଆଉ ଏତେ ଟିକେ ବୁଦ୍ଧି ନ ଥିବ ମୋର ।
ଶଂଖ—ନିଶ୍ଚୟ ଥିବ, କିନ୍ତୁ ଏ ଗୋପନ ସଂବାଦ ପାଇଲେ କିମିତି ?
ଭାର୍ଗବ—ଆପଣଙ୍କ ବନ୍ଧୁ ରାଘବର ପୁଅ ସୁଧନ୍ୱା କହୁଛି ।
ଶଂଖ—ମିଥ୍ୟା ସଂବାଦ ।
ଭାର୍ଗବ—ହଃ, ଆପଣ ଯାହାକୁ ପୋଷ୍ୟ ପୁତ୍ର ଗ୍ରହଣ କରୁଛନ୍ତି, ସେ କେବେ ମିଛ କହେ, କହି ପାରେ ?
ଶଂଖ—ସେ ଏ ସମ୍ବାଦ ପାଇଲା କାହୁଁ ?
ଭାର୍ଗବ—ରାଘବ ଠାରୁ ।
ଶଂଖ—ସେ ନ ଆସି ତମକୁ ପଠାଇଲା ଯେ ?

ଭାର୍ଗବ—ଯିଏ ଯେ ମୋ ପ୍ରାଣର ବନ୍ଧୁ, ତା ବାପ ଶଙ୍ଖଙ୍କ ବୋଲି ମୋତେ ପଠାଇଲା, ଆଉ ମୁଁ ନଦେଖିଲେ ତାଙ୍କ ମନ ଚଳିବ ? ଦିନ ରାତିରେ, ଶୋଇଉଠି, ଖେଳିବେଳେ ଡାକ୍ତିଁ ଯାଏ ତାଙ୍କିଁଥାଏ, ଏସବୁ ଖବର ତାଙ୍କୁ ଦେବ କିଏ ? ମୁଁ କଉର ମର୍ଯ୍ୟାର୍ଥ ପରା ?

ଶଂଖ—କିନ୍ତ ତ ବହୁ ଦିନରୁ ଏଠି ରହୁଛନ୍ତି, ପଡି ପାରୁ ଏଠାରୁ ଚାଲି ଯିବ, ଖତ କ'ଣ ?

ଭାର୍ଗବ—ଖତ କଣ ! ସଂଜୀବନୀ ବିଦ୍ୟା ଶିଖି ପାରି ପଳାଇ ଗଲେ ଦୈତ୍ୟକୁଳ ମରିବେ ଯେ ?

ଶଂଖ—ଏ ସଂବାଦ ଆଉ କିଏ ଜାଣେ ?

ଭାର୍ଗବ—ମୁଁ ଓ ସେ ଛଡା ଆଉ କେହି ଜାଣନ୍ତି ନାହିଁ ।

ଶଂଖ—ନିଶ୍ଚୟ ଆଉ କେହି ମଧ୍ୟ ଜାଣିଥିବେ !

ଭାର୍ଗବ—ଆମକୁ ଓଳ ପାଇଛନ୍ତି ? ପୁରସ୍କାରର ବଖରା ଦେବା ପାଇଁ ଧାଇଁ ଡାକିବୁ ଆମେ ? ତାହାଙ୍କୁ ବନ୍ଧୁ କହୁ ନାହିଁ ସେନାପତି ।

ଶଂଖ—ବିରୂପାକ୍ଷ । ମେର ନିର୍ଜନ କାରାଗାରରେ, ସଂଗୋପନରେ ।

(ବିରୂପାକ୍ଷ ବଂଶୀ ବାଦନ କଲେ, ଦୁଇ ଜଣ ରକ୍ଷି ଆସି ଇଙ୍ଗିତ ପାଇ ଭାର୍ଗବଙ୍କୁ ବନ୍ଦୀ କଲେ)

ଭାର୍ଗବ—ସେନାପତି, ସେନାପତି, ଲକ୍ଷ ମୁଦ୍ରା ବଦଳରେ ଇଏ କଣ ବାବା ? ସେ କେଁଥି ପୁଅ ସୁଧନ୍ୱା ମୋତେ ପଠାଇଲା, ପ୍ରଭୁ, ମୋର ଅପରାଧ ? ଦୟା କରି ଛାଡିଦିଅନ୍ତୁ ସେନାପତି, ପୁରସ୍କାର ଅଧେ ଦେବି । ( ରକ୍ଷି ଦୁଇ ଟାଣିଟାଣି ଆରମ୍ଭ

କରେଲ ) ଦୟା କରନ୍ତୁ ସେନାପତି, ଦୟା କରନ୍ତୁ, ମୁଁ ପୁରସ୍କାର ନେବ ନାହିଁ ବାବା ! ବାପ ପୁଅ ତୁମେହିଁ ସବୁ ଖାଅ । ଓଃ, ରଜା ପରିଅ କର୍ମଗୃହୀଗୁଡ଼ା ଇମିତି ଜୁଲୁମ-ବାଜ କି ହୋ ! ନିଅ ବାବା ନିଅ, ଖୁସି ହେଲେ କିଛୁ ଦେବ, ନହେଲେ—ନାହିଁ ତେବେ ମଧ ଛାଡ଼ି ଦିଅ ବାବା ।

ଶଂଖ—ଯାଅ ( ଭାର୍ଗବଙ୍କୁ ନେଇ ରକ୍ଷୀଗଣଙ୍କ ପ୍ରସ୍ଥାନ ) ବରୂପାକ୍ଷ ମୁଁ ତମଠାରୁ ଜାଣିବାକୁ ଚାହେଁ, କାହାଠାରୁ ତମେ ଏ ସଂବାଦ ପାଇଥିଲ ?

ବରୂପାକ୍ଷ—ଏଇ ମହାତ୍ମା ଠାରୁ ।

ଶଂଖ—ତେବେ ପ୍ରକାଶ କରିବାକୁ ଏତେ କୁଣ୍ଠିତ ହେଉଥିଲ କିଆଁ ?

ବରୂପାକ୍ଷ—ସୁଧନ୍ୱା ପାଇଁ ।

ଶଂଖ—ଅବଳମ୍ବେ ସୁଧନ୍ୱା ଓ ରାଘବକୁ ବନ୍ଦୀକରି ସଂଗୋପନରେ-

ବରୂପାକ୍ଷ—ସୁଧନ୍ୱା ?

ଶଂଖ—ଏହାହିଁ ରାଜନୀତି, ଏହାହିଁ କହିବି । ସୁଧନ୍ୱା—ସୁଧନ୍ୱା ମୋର ଆତ୍ମଜ ହେଲେ ମଧ ଠିକ୍ ଏହି ଆଦେଶ ଦେଇ ଥାନ୍ତି । ମୋର ରାଜ୍ୟଠାରୁ, ମୋର ଦେଶ ଠାରୁ, ମୋର ଜାତି ଠାରୁ ବଡ଼ ମୋ ଠାରେ କିଛି ନାହିଁ ବରୂପାକ୍ଷ । ମୁଁ ନିଜେ ଅନୁସନ୍ଧାନ କରି ଏହି ବନାଶରେ ଅଗ୍ରସର ହେବି । ସୁଧନ୍ୱାକୁ ଭାର୍ଗବ ସାଥିରେ ରଖିବ ଯାଅ ।

ବରୂପାକ୍ଷ—ସୁଧନ୍ୱା ।

ଶଂଖ—ଆଦେଶ, ଆଦେଶ ଯାଅ, (ବରୂପାକ୍ଷର ପ୍ରସ୍ଥାନ) । ଓଃ କି ବିଶ୍ୱାସ ଘାତକ । ରାଘବକୁ ଏତେ ଭଲ ବିଶ୍ୱାସ କରି,

ସ୍ପେନ୍ଦ୍ରବର ଚକ୍ଷୁରେ ଦେଖି କ ବଗ୍ଣ ଭୁଲ କରଥିଲ—ଅଜ ସ୍ୱିଷଣ ପ୍ରାୟୁଶ୍ଚିତ କର୍ବି—ତାହାର ତପ୍ତ ଶୋଣିତ ତର୍ପଣରେ ।

## ପଟକ୍ଷେପଣ



## ପଞ୍ଚମ ଦୃଶ୍ୟ

( ସ୍ଥାନ—ଶୁକାଗ୍ଯ୍ୟଙ୍କ ଅନ୍ତଃପୁର ଏକାଂଶ । କାଳ—ରାତ୍ରି । ଚନ୍ତାନ୍ୱିତା ଦେବଯାନ )

ଦେବଯାନୀ—ଅସ୍ତ ଗଲେ ଦିନମଣି
ପଶ୍ଚିମ ତୋରଣେ—
ସାନ୍ଧ୍ୟ ଅରତର ଘଣ୍ଟା
ନୀରବ ହୋଇଲେ
ବଧୂ କଣ୍ଠେ ସ୍ତବ୍ଧ ହେଲ
ମଧୁ ଶଂଖ ଧ୍ୱନ ।
ବହଗ ଡାକଲ ଏବେ
ନିଥର ନୀରବ ।
ଅରତର ଦୀପ ଶିଖା
ଜ୍ୱଳି ଜ୍ୱଳି ହେଲ ନର୍ବାପିତ ।
ତାମସୀ ଅଞ୍ଚଳେ ଧରା
ଆବର ରଜନୀ
ପିନ୍ଧିଲାଣି ଗଳେ ହେତେ
ତାରା ଫୁଲ ଦଳ ।

ତଥାପି ଫେରିଲେ ନାହିଁ
ପ୍ରିୟ ସଖା ମୋର ।
ସଙ୍ଗୀଏ ସକଳେ ଖୋଜି
ବନ ବନାନ୍ତର ,
ଫେରିଲେ ନିରାଶେ ।
ପ୍ରାଣ ଭୀତ ମୃଗ ପରି
ବ୍ୟାକୁଳେ ଆସିଲେ ଧାଇଁ
ସଁଙ୍ଗେ ଧେନୁକୁଳ
ବହିହରା ହୋଇ ।
ଏପରି ତ ଘଟି ନାହିଁ କେବେ ?
କାହିଁକି ଫେରିଲେ ନାହିଁ
ପ୍ରିୟ ସଖା ମୋର ?
କାହିଁକି ବା ପ୍ରାଣ ମୋର
ଉଠେ କାନ୍ଦି ଆଜି !
ଘନ ଘନ ଦକ୍ଷିଣ ନୟନ ନାଚେ
ଭୀତି ଜାଗେ ମନେ,
କେଉଁ ଏକ ଅଶୁଭ ଲଗନେ,
ଛାଡ଼ିଲେ ଆଶ୍ରମ ସଖା ।
କି ହେଲା, ରହିଲେ କାହିଁ,
ବୃହସ୍ପତି ସୁତ ?
( କଲ୍ୟାଣୀକୁ ଆସିବାର ଦେଖି )
ଧ୍ୟାନ ଭଗ୍ନ ହେଲା କି ପିତାର ?

କଲ୍ୟାଣୀ—ଅଚିରେ ଭେଟିବେ ସଖି,
କାହିଁକି ଉତଳା ଏତେ ?

ଦେବ ସୁତ ସୁକଲ୍ୟାଣ କର
ଅମଙ୍ଗଳ ତାଙ୍କୁ ଛେଦିବ
ପାରେ କି ପରଶି ?
ମିଥ୍ୟା ଭୟ ସନ୍ଦେହର
ପ୍ରଫୁଲ୍ଲ ମାନସେ
ଅଟେସି ରହନା ସହି !
ଆସିବେ ସେ,
ଫେରି ନାସ୍ତପଦେ ।
ଦେବଯାନି—କଲ୍ୟାଣି !
ଭୟ ହୁଏ ମନେ
ଆଉଥର ଉଠି ଦେଖି
ସ୍ୱର୍ଗବାସୀ କଚ
ହୁଏତ ଗୋପନେ ଗଲେ
ଫେରି ସ୍ୱର୍ଗ ପୁରେ ।
ଅପଯଶ ଘଟିବ ମୋହର
ଘଟିବ ପିତାର ମୋର ।
ଉପହାସ କରି ଦେବକୁଳ
କହିବେ ଗରବେ—
ଦୈତ୍ୟ ସଙ୍ଗ ରହି ପିତା,
ଭୁଲିଲେଣି ଶିଷ୍ଟାଚାର ନୀତି ।
ତାରେ ମୋର
ଅଖ୍ୟାତି, ଅଯଶ ସହୁ
ପାରେ ନା ପିତାର,
ସେ ଯେ ମୋର ସର୍ବ ଇଷ୍ଟ

ଏକା ଧାରେ ଜନକ ଜନନୀ ।

କଲ୍ୟାଣୀ—ଭୁଲ ଦେଇ ଭୁଲ ବୁଝାଇବା
କେତେ ଭୁଲ ଜାଣ ତ ସଜନୀ ?
ସଖି ଛଡ ଶିଶୁ ନୁହେଁ
ଜାଣେ ସବୁ, ବୁଝେ ସବୁ
ଜାଣେ ସତ ଅନ୍ତରର
ଗୋପନ ଲିପିକା ।
ଅଜଣା ତ ନୁହେଁ ମୋର
ଅଣଜା ସଉତ ରହେ
ସ୍ନେହ, ପ୍ରେମ, ବୁଝେ ।
ବୃଥା ଚିନ୍ତା କର ତ୍ୟାଗ
ତମକୁ ନ କହୁ
ପାଦେ ମାଝ ଯିବେ ନାହିଁ
ଦେବଗୁରୁ ସୁତ ।
ବନ୍ଧା କ ସେ ପଡ଼ ନାହିଁ
ଶ୍ରୀଚରଣେ ତବ ?
ଫୁଲ ତୋଳା, ଅଧ୍ୟୟନ,
ସଙ୍ଗୀତ ସମ୍ଭୋଗ,
ସବୁବେଳେ ତୃଷିତ
ବ୍ୟାକୁଳ ଆଖି
ଦେଖି ଅଛୁ ସଖି !
ଜାଣି ଅଛୁ ଗୋପନ ବାରତ

ଦେବଯାନ—ପୋଡ଼ା ମୁହଁ !

( ନେପଥ୍ୟରୁ ଶୁକ୍ରାଚାର୍ଯ୍ୟ ଡ଼ାକିଲେ )

ଶୁକ୍ରାଚାର୍ଯ୍ୟ—ଦେବଯାନୀ !

ଦେବଯାନୀ—( ଆବେଗରେ ଧାଇଁ ଯାଇ) ପିତା !

ଶୁକ୍ରାଚାର୍ଯ୍ୟ—ଜାହ୍ନ ଅଧୀର ମାତା,
ଅସମୟେ କ ହେତୁ ଆହ୍ୱାନ ?

ଦେବଯାନୀ—ପିତା, ଫେରି ନାହିଁ କଚ !

ଶୁକ୍ରାଚାର୍ଯ୍ୟ—ଅତୀତ ପ୍ରଥମ ଯାମ
ଫେରି ନାହିଁ କଚ ?
ଅସମ୍ଭବ,
ନିରଳସ ନିଷ୍ଠାବାନ୍
କର୍ତ୍ତବ୍ୟ ସାଧକ—

ଦେବଯାନୀ—ସତୀର୍ଥ ସକଳେ ଗୋଟି
ବନ, ଉପବନ
ଫେରିଲେଣି ନିସ୍ୱଶ ହୃଦୟେ ।

ଶୁକ୍ରାଚାର୍ଯ୍ୟ—ଚିନ୍ତା ତ୍ୟାଗ କର ମାତା !
କଲ୍ୟାଣି ! କମଣ୍ଡଳୁ ମୋର ?
(କଲ୍ୟାଣୀର ପ୍ରସ୍ଥାନ )
ଫେରିଲେଣି ଗୋଧନ ସକଳେ ?

ଦେବଯାନୀ—ପ୍ରାଣଭୀତା କୁରଙ୍ଗିନୀ ସମ
ଧାଇଁ ଆସି ପଶିଲେ ଆଶ୍ରମେ—।
(କମଣ୍ଡଳୁ ନେଇ କଲ୍ୟାଣୀର ପ୍ରବେଶ )

ଶୁକ୍ରାଚାର୍ଯ୍ୟ—( ଧ୍ୟାନାନ୍ତେ )
ହୁଁ, ମାଣବକ ଅଧ୍ୟାତ୍ମର
ପ୍ରିୟତମ ଶିଷ୍ୟୋପରେ ମୋର,

ଦାୟୀ ଦୈତ୍ୟଗୁରୁ । ( ମନେ ମନେ ମନ୍ତ୍ରପାଠ ଓ
ବାରି ନିକ୍ଷେପଣ ସଙ୍ଗେ ସଙ୍ଗେ ଡାକିଲେ )
କଚ ! କଚ ! କଚ ।
( କଚର ସହସା ପ୍ରବେଶ )

କଚ—କି ଆଦେଶ ପ୍ରଭୁ !

ଶୁକ୍ରାଚାର୍ଯ୍ୟ—କର୍ତ୍ତବ୍ୟ ପାଳନେ ତ୍ରୁଟି, ଦେଖିଲି ପ୍ରଥମ ।

କଚ—ନିରୁପାୟ, ନିରୁପାୟ ପ୍ରଭୁ,
ଦିବା ଅବସାନ ପ୍ରାୟ,
ଗୋଧନ ଚରାଇ
ଫେରୁଥିଲି ଆଶ୍ରମକୁ ।
ଅକାଳେ ଓହ୍ଲାଇ ଆସି
ପ୍ରଳୟ--ଅନ୍ଧାର
ଘେରି ଦେଲା ବନ ବନାନ୍ତର,
ଅବରୋଧି ଦୃଷ୍ଟି ପଥ ମୋର ।
ସହସା ଭୀଷଣ ବ୍ୟଥା
ବାଜିଲା ବୁକୁରେ ଶିରେ
ସର୍ବାଙ୍ଗରେ ମୋର,
ସାହାଯ୍ୟ ପ୍ରାର୍ଥନା ଚେଷ୍ଟେ
ହୋଇଲି ବିଫଳ,
କ୍ଷଣ ପରେ ହତଜ୍ଞାନ
ହେଲି ଗୁରୁଦେବ !
ବୁଝି ନ ପାରୁଛି କିଛି
କି ରୂପେ ଆସିଲି ଏଠି,
କେଉଁ ପଥ ଦେଇ,

କାହିଁ ଗଲ ସେ ଅନ୍ଧାର
କାହିଁ ଧେନୁ କୁଳ ?
ଶୁକ୍ରାଚାର୍ଯ୍ୟ—ବୁଝିଅଛୁ ଦୈତ୍ୟ ମାୟା
ସାବଧାନ ହେଉ !
ଅନ୍ତରୀକ୍ଷେ ଶତ୍ରୁ ତବ
ବିନାଶର ପାଇଁ ଅଛି ବ୍ୟସ୍ତ
ସ୍ପଷ୍ଟ ଦେଖୁଅଛୁ ।
କାଲି ଠାରୁ ଗୋଧନର ଭାର ଦେବ
ମହାନନ୍ଦ ଠାରେ ।
ଯାଅ ତୁମେ କରିବ ବିଶ୍ରାମ ।
( ସକଳଙ୍କ ପ୍ରସ୍ଥାନ )
ଦୈତ୍ୟପତି ! ସୁବିଚାର୍
ନ କରିଲେ କାଲି
ଭୀଷଣ ବିପଦ ତବ
ଘଟିବ ଜନାଇ ।

ପଟ କ୍ଷେପଣ



# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

[ ସ୍ଥାନ—ଦୈତ୍ୟରାଜଙ୍କ ଉଦ୍ୟାନ, କାଳ—ଅପରାହ୍ନ ସନ୍ଧ୍ୟା, ପୁଷ୍ପ ଚୟନ ରତା ଶର୍ମିଷ୍ଠା ସହସା ସେନାନାୟକ ବରୁଣାକ୍ଷଙ୍କୁ ଦେଖି ]

ଶର୍ମିଷ୍ଠା—ବରୁଣାକ୍ଷ !

ବରୁଣାକ୍ଷ—ରାଜକନ୍ୟା !

ଶର୍ମିଷ୍ଠା—ବାର ବାର ନିଷେଧ କଲି ତଥାପି—?

ବରୁଣାକ୍ଷ—ଦେବି !

ଶର୍ମିଷ୍ଠା—ଅସଂଯତ ଯୁବକ ! ଏଥର ପରିଣାମ ଜାଣ ?

ବରୁଣାକ୍ଷ—ଜାଣେ ବୋଲି ତ ଅଧୀର ଆବେଗରେ ଧାଇଁ ଆସିଛି ଦେବି ! ଜୀବନର ଆଶା ଆକାଂକ୍ଷା, ସୁଖ, ଶାନ୍ତି ସବୁ ବିସର୍ଜନ ଦେଇ ଜୀଇଁ ରହିବା ପାଇଁ କଠୋରତମ ଦଣ୍ଡ ଯେ ମୋର ଅଜଣା; ତେଣୁ ସିନା ଏ ଅସହ୍ୟ, ଅବାଞ୍ଛା ଜୀବନ ଭାର ଓହ୍ଲାଇ ଦେବାକୁ ଏ ଆକୁଳ ଅଧୀରତା ରାଜକୁମାରି ! ତମ ଇଙ୍ଗିତ ମାତ୍ରକେ ବନ୍ଦୀ ହେବି, ଅକପଟେ ସବୁ ଦୋଷ, ସବୁ ତ୍ରୁଟି ମଥା ପାତି ବରଣ କରିବି, ହସି ହସି ବସୁଧାର ତମସା ଗହ୍ୱରରେ ଶାନ୍ତିମୟ ଶେଷ ଶଯ୍ୟା ରଚି ନେଇ ଧନ୍ୟ ହେବି । ପ୍ରାର୍ଥନା ମୋର ବିଫଳ କରନା—ଭିକ୍ଷା, ଭିକ୍ଷା, ଶେଷ ଭିକ୍ଷା ।

ଶର୍ମିଷ୍ଠା—ବରୁଣାକ୍ଷ ! ତମେ ମୋର ବାଲ୍ୟବନ୍ଧୁ—ତେଣୁ ବାରବାର କ୍ଷମା କରୁଛି—ନତୁବା—

ବରୁପାକ୍ଷ—ଅତୀତ, ଅତୀତ ରାଜକୁମାରୀ ! ଭୁଲଯାଅ ବାଲ୍ୟର ସେ ବ୍ୟବଧାନ ହସ ପ୍ରୀତି ମେଳ, ସେହୁ ହସ ଖେଳ କଥା ! ମନେ କର ବରୁପାକ୍ଷ ବୋଲି କେହୁ ତମ ସହଚର ନଥିଲେ ତାଙ୍କୁ ତମେ ଜାଣ ନାହିଁ । ମନେ କର ଅବେଳରେ କଭୁତରେ ଅପରିଚିତ ଏକ ବରୁପାକ୍ଷ ଆସି ରାଜକନ୍ୟାର ସମ୍ମାନରେ ଆଘାତ କଲା, ଦଣ୍ଡ ତାର ଅନିବାର୍ଯ୍ୟ ।

ଶର୍ମିଷ୍ଠା—ମୁଁ ଯେ ତାହା ଦେଇ ପାରୁ ନାହିଁ, ତେଣୁ ନା ଏ ଲଜ୍ଜା ବେଗ ।

ବରୁପାକ୍ଷ—ଦୟା ଯଦ ସଞ୍ଚିତ ଅଛି, ଉତ୍ତରଣ କର ଦେବ !

ଶର୍ମିଷ୍ଠା—ବରୁପାକ୍ଷ ! ଅସମ୍ଭବ, ଅସମ୍ଭବ ଶରକାଳ ଜାଣ ତ ।

ବରୁପାକ୍ଷ—ଜାଣେ ରାଜକନ୍ୟା ! ସେଥି ପାଇଁ ତ ମୁଁ ମୃତ୍ୟୁକାମୀ । ଅବେଳେ ଅଟେବ ଜୀବନ ପ୍ରଭାତରେ ଉଲ୍ଲାଇ ଆସିଛି ଆଖିରେ ଘୋର ସନ୍ଧ୍ୟାର ଗାଢ଼ତମ ଅନ୍ଧକାର ।

ଶର୍ମିଷ୍ଠା—ଛି, ବରୁପାକ୍ଷ । ତମେ ନା ଦୈତ୍ୟ ସେନା ନାୟକ, ବୀର ପୁରୁଷ । ତୁଚ୍ଛ ଏକ ନାରୀ ପାଇଁ ଏ କାତରତା ତମ ପୌରୁଷକୁ ଆଘାତ କରୁ ନାହିଁ ?

ବରୁପାକ୍ଷ—ମୃତ୍ୟୁକାମୀ ଯଶ, ମାନ, ଗୌରବ ସବୁ ଦେବ ! ତାହାର ମୃତ୍ୟୁଇଚ୍ଛା ଶକ୍ତି ।

ଶର୍ମିଷ୍ଠା—ବରୁପାକ୍ଷ ! ଦେଖୁଛି ତମେ ଉନ୍ମାଦ ।

ବରୁପାକ୍ଷ—ଖାଲି ଉନ୍ମାଦ ନୁହେଁ । ମୁଁ ଅସ୍ଥିର, ମୁଁ ଚଞ୍ଚଳ, ମୁଁ ଅସହାୟ । ଅସହାୟ ବୋଲି ପାଗଳ । ମୁଁ କି ଜାଣେ ଜାଣ ? 'ମନ୍ତ୍ରର ସାଧନ କମ୍ବା ଶରୀର ପତନ' ।

ଶର୍ମିଷ୍ଠା—ଅକାରଣ ମରଣ ବରଣ ଯେ ଅକଲ୍ୟାଣକର ବୀର ! ତମ ଦେଶର, ତମ ଜାତିର ଦୁର୍ଦ୍ଦିନରେ ତମେ କେତେ

କାମ କରି ପାରିବ । ତମଠାରେ ଦେଶର କ ଭୀଷଣ ଦାବୀ
ଅଛି ଜାଣ ତ ?

ବୃଷପର୍ବା—ସବୁ ଜାଣେ ଦେବ ! ସବୁ ବୁଝେଁ । ମୋର ସବୁ ଷମତା, ସବୁ ଶକ୍ତି, ସବୁ ସାମର୍ଥ୍ୟ ଶେଷ ହେଇଯାଇଛି । ଏବେ ମୁଁ ପଙ୍ଗୁ, ଅଥର୍ବ, ଅକ୍ଷମ ।

ଶର୍ମିଷ୍ଠା—ତେବେ, ଏ ମହା ଗୁରୁ ଭାର ବହନ କରିବା ପାଇଁ କ ଦାନବପତି ଧାଇଁ ଆସିଛ, ବୃଷପର୍ବା ?

ବୃଷପର୍ବା—ମୁଁ ତ ଅଥର୍ବ, ଅକ୍ଷମ, ଅସହାୟ ନ ଥିଲି । ମୁଁ ଦୈତ୍ୟ ସେନା ନାୟକ, ମୁଁ ବୀର, ମୁଁ ଦୁର୍ଦ୍ଧର୍ଷ କିନ୍ତୁ କାଢ଼ି ନେଲା କଏ ସିଂହବିକ୍ରମୀ ମୋର ଦୁର୍ନିବାର ଶକ୍ତି ଧାରା ?

ଶର୍ମିଷ୍ଠା—ଶୁଣ ବୃଷପର୍ବା ! ତମେ ଯଦି କୃତକାର୍ଯ୍ୟ ହୋଇପାର, ଅସମ୍ଭବ, ସମ୍ଭବ କରିବ ।

ବୃଷପର୍ବା—କହ କହ ଦେବ ! କ ସେ ଦୁର୍ଲ୍ଲଭ ସଂଯତ ସାଧନା ? ଜୀବନ ଦେଇ ବୃଷପର୍ବା ତାହା ସଫଳ କରିବ ।

ଶର୍ମିଷ୍ଠା—ଗୁରୁ କଚର ବିନାଶ ।

ବୃଷପର୍ବା—ବାରମ୍ବାର ଅତି ସଂଗୋପନରେ ସେ ନିହତ ହେଲା । କିନ୍ତୁ ଦୈତ୍ୟ ଗୁରୁଙ୍କର ପୂତ ମନ୍ତ୍ର ବ୍ୟର୍ଥ କଲା ସମ୍ମିଳିତ ଦୈତ୍ୟର ସବୁ ପ୍ରଚେଷ୍ଟା । ଦୈତ୍ୟଗୁରୁ ଜୀବିତ ଥିବା ଯାଏଁ କଚର ମୃତ୍ୟୁ ଅସମ୍ଭବ, ଅସମ୍ଭବ ।

ଶର୍ମିଷ୍ଠା—ଦେବାସୁର ଯୁଦ୍ଧରେ ଦୈତ୍ୟଗୁରୁ ଶୁକ୍ରାଚାର୍ଯ୍ୟଙ୍କର ପ୍ରୟୋଜନ ଅପରିହାର୍ଯ୍ୟ, ନଚେତ୍ ମୋର ଜାତିର ମଙ୍ଗଳ ପାଇଁ ପିତୃ ଗୁରୁଙ୍କର ମୃତ୍ୟୁରେ ମଧ୍ୟ ବନ୍ଧୁ ମାନେ ବିଚଳିତ ହୁଅନ୍ତି ନାହିଁ ।

ବୃଷପର୍ବା—ତେବେ ଉପାୟ ରାଜକୁମାରୀ ?

ଶର୍ମିଷ୍ଠା—ଜମ୍ଭାବନର ଭାର ମୋର ନୁହେଁ ।

ବଜ୍ରପାକ୍ଷ—ଗୁରୁ ସେବକଙ୍କୁ ଉପେକ୍ଷା କରି ମୁଁ ଥରେ ଶେଷ ଚେଷ୍ଟା କରି ଦେଖେଁ । ପିନାକପାଣିର ଆଶୀର୍ବାଦ ପାଇଲେ ହୁଏ ତ କୃତକାର୍ଯ୍ୟ ହୋଇ ଫେରିବି ଦେବି !

ଶର୍ମିଷ୍ଠା—ନତୁବା ନିଚେଳା ଦେଖା ଏହୁ ଶେଷ । ( ବଜ୍ରାକ୍ଷର ପ୍ରସ୍ଥାନ ) ପିତାର ଅତ୍ୟଧିକ ଭକ୍ତି ଯୋଗୁଁ ଦୈତ୍ୟଗୁରୁର ଅହଙ୍କାର ଦିନକୁ ଦିନ ସୀମା ଲଙ୍ଘି ଉଠୁଛି ।

( ଦେବଯାନୀଙ୍କୁ ପ୍ରବିଷ୍ଟ ହେବାର ଦେଖି )

ଆଜି ବଡ ସୌଭାଗ୍ୟ ଯେ ସହସା ଆଶ୍ରମ ଛାଡ଼ି ଅତେବଳେ ଋଷି କନ୍ୟାର ଆଗମନ ?

ଦେବଯାନୀ—ପ୍ରାର୍ଥନା ଅଛି ରାଜକୁମାରୀ । ଭିକ୍ଷା ।

ଶର୍ମିଷ୍ଠା—ଆଦେଶ କର ଗୁରୁ କନ୍ୟା !

ଦେବଯାନୀ—ବାର ବାର ଦୈତ୍ୟକୁଳ ନିରପରାଧ ସ୍ୱର୍ବାସୀ ଶିକ୍ଷାର୍ଥୀ କଚଙ୍କୁ ନିହତ କରୁଛନ୍ତି । ତମେ ଏହାର ପ୍ରତିକାର କର, ରାଜକନ୍ୟା !

ଶର୍ମିଷ୍ଠା—ଏହା ଯେ ମୋର ଅଧିକାର ବହିର୍ଭୂତ ଋଷି କନ୍ୟା ! ଏହା ଅନ୍ତଃପୁରର କାର୍ଯ୍ୟ ନୁହେଁ, ଏହା ରାଜ ସଭାର ।

ଦେବଯାନୀ—ପିତା ଦୈତ୍ୟପତି ପାଖରେ ମଧ୍ୟ ଅଭିଯୋଗ କରିଥିଲେ । ସେ କହନ୍ତି ତାଙ୍କ ଅଜ୍ଞାତରେ, ଅନଭିମତରେ ଏ ସବୁ ଘଟଣା ଘଟୁଛି ।

ଶର୍ମିଷ୍ଠା—ତେବେ ମୁଁ କଣ କରି ପାରେ ଋଷି କନ୍ୟା ?

ଦେବଯାନୀ—ମୋର ତ ଅଜଣା ନାହିଁ ଦୈତ୍ୟ ରାଜ୍ୟରେ ରାଜକନ୍ୟା ଶର୍ମିଷ୍ଠାର ପ୍ରଭାବ ପ୍ରତିପତ୍ତି ଅପ୍ରତିହତ, ଅପ୍ରତିଦ୍ୱନ୍ଦ୍ୱୀ ।

ଶର୍ମିଷ୍ଠା—ଗୁରୁ କନ୍ୟା ! ସତ୍ୟ କହୁଚ ଏ ସ୍ବର୍ଗୀୟ, ତରୁଣ, ସୁଦର୍ଶନ, ସୌମ୍ୟ ତପସ୍ବୀଟି ପାଇଁ ତମେ ଏତେ ବ୍ୟାକୁଳ କିଆଁ ?

ଦେବଯାନୀ—ଠିକ୍ ଦୈତ୍ୟ କନ୍ୟା ପରି କହିଲ ରାଜକୁମାରୀ ! ଦୈତ୍ୟକୁଳୋଦ୍ଭବା ନ ହେଲେ ଜାଣନ୍ତ ବୁଝନ୍ତ ଦୟା ରମଣୀର ଶ୍ରେଷ୍ଠତମ ଅଳଙ୍କାର, ଅହଙ୍କାର ।

ଶର୍ମିଷ୍ଠା—ଦୈତ୍ୟର ମଧ୍ୟ ଦୟା ଦାକ୍ଷିଣ୍ୟ ଅଜଣା ନୁହେଁ, ଅଚହ୍ନା ନୁହେଁ ଋଷିକନ୍ୟା । ତେବେ ଦୈତ୍ୟର ଦୟା ଦେବତାଙ୍କ ଭଳି ଅସାର ନୁହେଁ, ଉଚ୍ଛୃଙ୍ଖଳ, ଅସଂଯତ ନୁହେଁ । ଯଥା ତଥା ଅକାରଣେ ବିତରିତ ହୁଏ ନା ।

ଦେବଯାନୀ—ରାଜକନ୍ୟା ! ଅକାରଣେ ଗୁରୁନିନ୍ଦା କଲ, ଏହା ମହା ପାପ ।

ଶର୍ମିଷ୍ଠା—ଅକାରଣ ଗୁରୁକନ୍ୟା ? ଏହି ସହଜ ସରଳ କଥାଟି ମୋତେ ସ୍ମରଣ କରାଇ ଦେବାକୁ ପଡ଼ିବ କି ? ଦେବଗୁରୁ ସୁତ କଚର ଦୈତ୍ୟପୁରୀ ଆଗମନ କେବଳ ବ୍ରହ୍ମଚର୍ଯ୍ୟ ଧାରଣ ପାଇଁ ନୁହେଁ । ଦେବତା ପ୍ରରୋଚିତ କଚର ଆଗମନ ମୃତ୍ୟୁ ସଞ୍ଜିବନୀ ବିଦ୍ୟା ଅପହରଣ ପାଇଁ, ନୁହେଁ କି ? ଏ ସବୁ ଜାଣି ଶୁଣି ସୁଦ୍ଧା ତମେମାନେ ଆଜି ଯାଏଁ କଚଙ୍କୁ ମହା ସମାଦରରେ ଆଶ୍ରୟ ଦେଇ ରଖିଛ—ତମ ପିତାର ପ୍ରିୟତମ ଶିଷ୍ୟ ସେ । ଭୁଲିଗଲ କି ବାର ବାର ଦୈତ୍ୟ କୁଳର ସମ୍ମିଳିତ ଚେଷ୍ଟା ! ବ୍ୟର୍ଥ କରି ନିହତ କଚଙ୍କୁ ପୁନର୍ଜ୍ଜିବିତ କରିଛି କେବଳ ତମରି ଆକୁଳ ଅବେଦନ ।

ଦେବଯାନୀ—କହିଥିଲେ, ମନେ କର କି ରାଜକନ୍ୟା ତାହା ଦୈତ୍ୟର ଅକଲ୍ୟାଣ ପାଇଁ ?

ଶର୍ମିଷ୍ଠା—ତେବେ ଦୈତ୍ୟ କୁଳର ପ୍ରଚେଷ୍ଟା ତାଙ୍କ କଲ୍ୟାଣ ପାଇଁ ନୁହେଁ, କେବଳ ତମ ଅକଲ୍ୟାଣ ପାଇଁ ?

ଦେବଯାନୀ—ଭୁଲ ବୁଝନା ରାଜକନ୍ୟା, ଦୈତ୍ୟ ପାଇଁ ଅବଶ୍ୟ ମୃତ୍ୟୁ ସଞ୍ଜୀବନୀ ଦୈତ୍ୟରଙ୍କୁ ଶତ ଭାଲ ଥିବ, ଦେବତାର ସେଥିରେ ବନ୍ଧ, ମାତ୍ର ଅଧିକାର ନାହିଁ । କାଳ୍ପନିକ ଅଶଙ୍କାରେ ପ୍ରବାସୀ ଯୁବକର ସର୍ବନାଶ କରନାହିଁ ଦେବ ! ଦୈତ୍ୟର ଏ ଅମୂଲ୍ୟ ରତ୍ନ ଭୁଲ୍ ମଧ୍ୟ ପିତା କେବେ ଦେବତାଙ୍କୁ ଦେବେ ନାହିଁ ଯେ ।

ଶର୍ମିଷ୍ଠା—ମୋର ଅଜଣା ନାହିଁ ଋଷି କନ୍ୟା, ଆଦରଣୀ କନ୍ୟାର ପ୍ରାର୍ଥନା ଦୈତ୍ୟ ଗୁରୁର ଅଲଙ୍ଘନୀୟ ।

ଦେବଯାନୀ—ମୋତେ ବିଶ୍ୱାସ କର ରାଜକନ୍ୟା ।

ଶର୍ମିଷ୍ଠା—ପଦ୍ମ ପତ୍ରର ଜଳ କଣା ପରି ପ୍ରଣୟମୁଗ୍ଧା ଯୁବତୀର କଥା ଅସ୍ଥିର, ଚଞ୍ଚଳ ।

ଦେବଯାନୀ—ରାଜକନ୍ୟା, ଶ୍ଳୀଳତାର ସୀମା ଲଙ୍ଘି କଥା ଭାଷା କହିବା ଦୈତ୍ୟରଙ୍କୁ ଶୋଭା ପାଏ ।

ଶର୍ମିଷ୍ଠା—କିନ୍ତୁ ଦୈତ୍ୟ ଅନ୍ନରେ ପରିପୁଷ୍ଟାର ମୁହଁରେ ଦୈତ୍ୟ ନିନ୍ଦା ବଦ୍ଧ ମାତ୍ର ଶୋଭା ପାଏ ନା ଋଷିକନ୍ୟା ।

ଦେବଯାନୀ—ମୋତେ ଅପମାନ କରିବାର ତମର କି ଅଧିକାର ଅଛି ରାଜକୁମାରୀ ?

ଶର୍ମିଷ୍ଠା—ଗର୍ବର ସହଚରୀ ଅପମାନ ଓ ଉପହାସ । ଯା ପାଇଁ ତମ ଅଧୀରତା—ଦୈତ୍ୟର ମଙ୍ଗଳ କାମନା ସ୍ୱର ଅଭିସମ୍ପାତ କରେଁ ତାହାର ପାଦରେ ତମେ ଲାଞ୍ଛିତା ହୁଅ, ଉପେକ୍ଷିତା ହୁଅ ଋଷି କନ୍ୟା !

ଦେବଯାନୀ—ଋଷିକନ୍ୟା ମଧ୍ୟ ଅଭିଶାପ ଦେଇ ଜାଣେ ରାଜ
କୁମାର ! ଦେବତା ଦୈତ୍ୟ ଭିତର ସ୍ଥାନ ନୁହଁ । ଅଭି-
ସମ୍ପାତ କରେ 'ଦୈତ୍ୟ ଦେବତାର ସହଯୋଗ ଛାଡ଼ି
ତୁଚ୍ଛ ମାନବର ପ୍ରଣୟ ମୁଗ୍ଧା ହୋଇ ଯୁଗ ଯୁଗାନ୍ତର
ଦାସତ୍ୱ ଗ୍ରହଣ କର ଜୀବନ ଧନ୍ୟ କର ! ସଫଳ କର !
ସୁଗମ କର !

## ପଟ କ୍ଷେପଣ



## ଦ୍ୱିତୀୟ ଦୃଶ୍ୟ

( ସ୍ଥାନ—ପିନାକପାଣିର ପୂଜକ ଶମ୍ଭୁନାଥଙ୍କର ଅନ୍ତଃପୁର । କାଳ—ଅତି ଶାନ୍ତ ସନ୍ଧ୍ୟା । ଉମା—ନକ୍ଷତ୍ର ଭରା ଆକାଶ ତଳେ ଉଦାସିନୀ ଭଳି ଗୃହେ ବସି ଥିଲେ । ଶମ୍ଭୁନାଥ ଅନ୍ତରାଳରୁ ନିରୀକ୍ଷଣ କର )

ଶମ୍ଭୁ—(ସ୍ୱଗତ) କରୁଣାର ପ୍ରତି ମୂର୍ତ୍ତି ! ସ୍ନେହର ପ୍ରସୂତି । ରମଣୀ
ହୃଦୟ କି ରମଣୀୟ, କି କମନୀୟ ! (ପ୍ରକାଶ୍ୟ) ଉମା !
ଉଦାସିନୀ ଭଳି ବସି ଏତେ କଣ ଭାବୁଥିଲ ?

ଉମା—ଭାବନାର ସୀମା ଅଛି—କାଲି ନା ପିନାକପାଣିର ବାତ୍ସରିକ
ଉତ୍ସବ ?

ଶମ୍ଭୁ—ନିଶ୍ଚୟ କାଲି ତମ ଚନ୍ଦ୍ରହାରର—

ଉମା—ଚନ୍ଦ୍ରହାର—ଛି ! ମୋତେ କି ଏତିକି ସ୍ୱାର୍ଥପର ଭାବ ?
କାଲି ନା ସର୍ଗବର ମୋର ଜନ୍ମ ତିଥି ?

ଶମ୍ଭୁ — କଣ କରିବ ଉମା, ଚେଷ୍ଟାର ତ ବିନ୍ଦୁମାତ୍ର ତ୍ରୁଟି କରି ନାହିଁ ।
ସାଧ୍ୟାତୀତ ଅର୍ଥବ୍ୟୟ, ପ୍ରାଣପାତ ପରିଶ୍ରମ, ସବୁ ବ୍ୟର୍ଥ
ହେଲା । ତା ପାଇଁ ମୋର ବୁକୁରେ କି ଘାତ ବାଜେ ଉମା
ତମ ପରି କେବଳ ଅଜସ୍ର ସ୍ନେହ ଢାଳେ ନା, ତାହାର
ମଙ୍ଗଳ ପାଇଁ ସମସ୍ତ ସମୟରେ ତାଡ଼ନା କରେଁ ବୋଲି
କି ତାର ବିୟୋଗ ବେଦନା ମୋର ଅନ୍ତସ୍ଥଳ ବିଦାରି
ଦେଇ ନାହିଁ ? କିନ୍ତୁ ହତାଶ ହୋଇ ପଡ଼ୁଛି ଉମା !
ମୋର ସବୁ ଚେଷ୍ଟା ବିଫଳ ହେଲା—ଅଧୀରା ପ୍ରେରଣା
ବଧୂ—ଆମ ସୁଖ ଦୁଃଖ ଶୁଣିବ କି, ବୁଝିବ କି—ଏ
ମର୍ମନ୍ତୁଦ ଜ୍ୱାଳା ? କୌଣସି ଠାରେ ତାର ସନ୍ଧାନ
ପାଇଲି ନାହିଁ—ଧୈର୍ଯ୍ୟ ଧର ଉମା !

ଉମା-ଧୈର୍ଯ୍ୟ, ତମେ ତ ଜାଣ ଠିକ୍ ଆଜି ଦିନରେ ସ୍ୱାଗତ ହେଲେ,
ଯିବା ବେଳେ କହିଗଲେ-ଉମା, ଝିଅ ମୋର, ମା ମୋର,
ଭାର୍ଗବକୁ ତୋତେ ଦେଇ ଗଲି । ଠିକ୍ ତାର ଜନ୍ମତିଥିର
ଆଗ ଦିନ । ଆଜି ଦିନଟା କୌଣସି ମତେ ବଞ୍ଚି ପାରିଲେ
ତାର ଜନ୍ମତିଥିର ଉତ୍ସବ ଶେଷ ଥର ଦେଖି ଯାଆନ୍ତେ,
କିନ୍ତୁ ବିଧାତାର ଡାକ ଆସିଛି ମା, ଯିବାକୁହିଁ ହେବ ।
ଷୋହଳ ବର୍ଷ ଧରି ଶତ ସହସ୍ର ବାଧା ବିଘ୍ନ ଏଡ଼ି ତାର
ଜନ୍ମତିଥିରେ ଉତ୍ସବ କରୁଛି । ଯାଉଛି ମା, ତାକୁ ଦେଖିବୁ ।
ସେ ମୋର ବଡ଼ ଆଦରର, ବଡ଼ ସ୍ନେହର ।' ଆଜି
ତାହାର ଜନ୍ମତିଥି ଆଜି ସେ—।

ଶମ୍ଭୁ—ଶାନ୍ତ ହୁଅ ଉମା—ସାଧ୍ୟର ଅତୀତ ଯାହା—

ଭାର୍ଗବ—(ନେପଥ୍ୟ) "ମିଳନ ରାତିର ମଧୁ ଅବସର"—

(ଉମା ନେପଥ୍ୟରୁ ଗାଉଥିବା ଭାର୍ଗବର ଗୀତ ଶୁଣି)

ଶମ୍ଭୁ—ତମେ ଏପଣେ ଅପେ—
ଉମା—ଚୁପ୍ ( ବାଜ ଢ଼େର ଏତ ଦୃଷ୍ଟିରେ ଶମ୍ଭୁଙ୍କୁ ଚାହିଁଲେ )
ଶମ୍ଭୁ—ସତେ ଉମା !
ଉମା—ଚୁପ୍, ଚୁପ୍ । ଦେଖନା ଭାର୍ଗବର ସ୍ୱର ପରି ଶୁଭୁଛି ।
( ଶମ୍ଭୁନାଥଙ୍କ ପ୍ରସ୍ଥାନ—ଅନ୍ୟପଟେ ଗୀତ ଗାଇ ଗାଇ ଭାର୍ଗବର ପ୍ରବେଶ )
ଭାର୍ଗବ—"ମିଳନ ସଙ୍ଗର ମଧୁ ଅବସର" (ଦୌଡ଼ ଆସି) ଭାଉଜ ? ଭାଉଜ !
ଉମା—(ସାଦରେ ହାତରେ ଧରି ) ଭାର୍ଗବ ! ଭାର୍ଗବ ! କାହିଁଥିଲୁ ଭାର୍ଗବ ?
ଭାର୍ଗବ—ଶ୍ୱଶୁର ଘରେ ।
ଉମା—ଶ୍ୱଶୁର ଘରେ ? ବାହା ହେଲୁ କେବେ ?
ଭାର୍ଗବ—ବାହା ସବୁଲେ ତ ଆଉ ଶ୍ୱଶୁର ଘରେ ପଶୁ ନାହାନ୍ତି ନାହିଁ । ବାହା ଆଗରେ ଯେତେ ଆଦର ଯତ୍ନ ।
ଉମା—ହୁଁ, ଶ୍ୱଶୁରଟି କିଏ ?
ଭାର୍ଗବ—ଭଗବାନ ଜାଣନ୍ତି । ଧରି ନେଇ ସେନାପତି ଗୋଟିଏ ଘର ଭିତରେ ପୁରାଇ ଦେଲା, କିନ୍ତୁ ଖାଇବା-ପିଇବାର ଇମିତ ବନ୍ଦୋବସ୍ତ କରୁଥିଲା ଯେ ଶ୍ୱଶୁର ତ ଶ୍ୱଶୁର, ତାଂ ଦାପା, ବଡ଼ ବାପା, ଚୌଦ ପୁରୁଷରେ ଏତକ କେବେ କାହାରିକି ଦେଇ ନାହିଁ । ଦେଇ ପାରିବେ ବି ନାହିଁ । ବୋଧେ ପୁଅ କନ୍ଦୁଥମା ସେ ଘରୁ ବାହାରିବାକୁ ଦିଏ ନାହିଁ ।
( ଶମ୍ଭୁ ପ୍ରବେଶ କରି )
ଶମ୍ଭୁ—ଭାର୍ଗବ !
ଭାର୍ଗବ—ଭାଇନା !

ଶମ୍ଭୁ—ତୁ ବନ୍ଦୀ ଥିଲୁ ରେ ?
ଭାର୍ଗବ—ଠିକ୍ ବନ୍ଦୀ ନୁହେଁ ଭାଇନା ।
ଶମ୍ଭୁ—ତେବେ ?
ଭାର୍ଗବ—ବିଦେଶୀ ଧରିବା ପୁରସ୍କାର ପାଇଁ ଧାଇଁଲି ।
ଶମ୍ଭୁ—ସଙ୍ଗୀଟି କିଏ ?
ଭାର୍ଗବ—ସୁଧନ୍ୱା ।
ଶମ୍ଭୁ—ଯୋଗ୍ୟଂ ଯୋଗ୍ୟେନ ଯୁଜ୍ୟତେ । ତୋତେ ଏ ସବୁ ଗୋଲ୍‌ମାଲିଆ ବ୍ୟାପାରକୁ ଯିବାକୁ କହିଲା କିଏ ?
ଭାର୍ଗବ—ଲକ୍ଷ ଟଙ୍କା ଭାଇନା, ଲକ୍ଷଟଙ୍କା । ହୁଁ, କମ ନୁହେଁ ଭାଇନା, ଏକଂ, ଦଶଂ, ଶତଂ, ସହସ୍ରଂ, ଅଯୁତଂ, ଲକ୍ଷଂ—ଅଗାଧ ଟଙ୍କା । ଭାଗ ଦେବାକୁ ପଡ଼ିବ ଦେଖି ସେନାପତି ଆଉ ସେନା-ନାୟକ ଜଣ ଭଆ ଭାଷା କରି ଗୋଟିଏ ଘରେ ନେଇ କୁଲୁପ ଦେଲେ, ତା ପରେ ସୁଧନ୍ୱାକୁ ଧରି ଆଣି ମଝି ପୁରାଇ ଦେଲେ । କୁଲୁପ ଦେଇ ରଖିଥିଲେ ସତ, କିନ୍ତୁ ଖାଇବା ପିଇବା, ଲୁଗା ପଟା, ଆଦର ଯତ୍ନର କମା ଓ । ନଥିଲା । ଘରେ ଇମିତି ମିଳନ ଭାଇନା । ବେଧି ପୁଅ ଖାଲି ଘଣ୍ଟି ଛାଡୁ ନ ଥିଲା । ଦିନ ରାତି କୁଲୁପ ବନ୍ଦ ।
ଶମ୍ଭୁ—ତେବେ ଆସିଲୁ କମିତି ?
ଭାର୍ଗବ—ସେନାନାୟକ ଛାଡ଼ିଦେଲେ—ଆଜି ତ ସେନାପତି ଘରେ କାନ ବୋବାଳି ପଡ଼ୁଛି ନା ।
ଶମ୍ଭୁ—କିଆଁ ?
ଭାର୍ଗବ—ମଲା ଯେ ବେଧି ପୁଅ—ରାଜାର ଗୋଟିଏ ଗୁଣ୍ଡର ହୋଇ ନିଜକୁ ରାଜା ଭାବୁଥିଲା, ବିଧାତା ସେଥିପାଇଁ ନପାଠ

କଲେ । ସେ ହୁକୁମ ଦେଖା ଗଲା । ଦୈତ୍ୟଗୁରୁ ସଙ୍ଗରେ କଳି ଲଗାଅ କମିତ ମଜା ?

ଶମ୍ଭୁ—ଦୈତ୍ୟଗୁରୁ ସଙ୍ଗରେ ?

ଭାର୍ଗବ—ନୁହେଁ ? ତାଙ୍କ ପ୍ରିୟତମ ଛାତ୍ର, ଯାହା ଜୁଆଇଁ ବଟକୁ ମାରି ଦେଇଥିଲା ପରା, ସେଥିପାଇଁ ଗୁରୁଦେବଙ୍କ ରାଗ । ଆଜି ମୃତ ସୈନ୍ୟମାନଙ୍କୁ ଜିଆଁଇବା ବେଳେ କେବଳ ସେନାପତିଙ୍କୁ ବାଦ ଦେଲେ । ଗୁରୁ ସଙ୍ଗରେ ଦଗାବାଜି । ରାଜାର ଅନୁରୋଧ, ମନ୍ତ୍ରୀର ପ୍ରାର୍ଥନା କିଛି ଶୁଣିଲେ ନି । ଘରେ କାନ୍ଦ ବୋବାଳି ପଡ଼ିଲା ବେଳେ ସେନାନାୟକ ଯାଇ କହିଲେ, ମୁଁ ଯାହା କହିବି ଯଦି କରିବ ଶପଥ କର, ମୁକୁଳାଇ ଦେବ । ତତ୍‌କ୍ଷଣାତ୍ ପିନାକପାଣିର ନାମ ଧରି ଶପଥ କଲା, ସେ ମଧ୍ୟ ମୁକୁଳାଇ ଦେଲେ ।

ଶମ୍ଭୁ—କଣ ପାଇଁ ଶପଥ ?

ଭାର୍ଗବ—ବିଶେଷ କିଛି ନୁହେଁ । କାଲି ସନ୍ଧ୍ୟାରେ ଦର୍ଭକୁ ଜ୍ୱାଳଇ ବଣି ମର୍ତ୍ତିକୁ କେବଳ ତାଙ୍କ ନେବାକୁ ହେବ ।

ଶମ୍ଭୁ—ସେନାପତିଙ୍କ ଅବସ୍ଥା ଦେଖିଲୁ ତ ?

ଭାର୍ଗବ—ମୁଁ ତ ତାର କିଛି ଅନିଷ୍ଟ କରୁନ ।

ଶମ୍ଭୁ—ନା ତୁ ଏ ସବୁ ସଂସ୍ରବରେ ଥିବୁ ନି ।

ଭାର୍ଗବ—ରାଜକନ୍ୟାର ମଧ୍ୟ ଆଦେଶ ଅଛି ପରା ଭାଇନା ?

ଶମ୍ଭୁ—ଥାଉ । ଏ ସମ୍ପ୍ରଦାୟକୁ ଦୂରରେ ରଖିଥିବୁ ଚିରକାଳ । ଏମାନେ ଝଡ଼ ଠାରୁ ପ୍ରବଳ, ମଡ଼କ ଠାରୁ ନିର୍ମମ, ଲୋଭ ଠାରୁ ଅତୃପ୍ତ, ସରୀସୃପ ପରି ବକ୍ରଗାମୀ—କୁଟିଳ । ଦରିଦ୍ରକୁ ଶୋଷଣ କରି ଏମାନଙ୍କ ନୀତି—ମନୁଷ୍ୟତ୍ୱକୁ ପଙ୍ଗୁ କରି

ଏମାନଙ୍କ ଧର୍ମ—ବଡ଼ ନିର୍ମମ ଜାତିରେ ବଡ଼ ଗ୍ଲାପଣ ।

( ପଟକ୍ଷେପଣ )

—୦—

## ତୃତୀୟ ଦୃଶ୍ୟ

( ସ୍ଥାନ—ଶୁକ୍ରାଚାର୍ଯ୍ୟଙ୍କ ଆଶ୍ରମ । କାଳ—ସନ୍ଧ୍ୟା । ଦେବଯାନି ଶ୍ୟାମଳ ତୃଣ ଉପରେ ଶୋଇ ଶୋଇ ଭାବୁଥିଲେ )

ଦେବଯାନି—(ସ୍ୱଗତ) ଦିନ ଯାଏ ଦିନ ଆସେ

ନିରାଶାରେ ମିଶି ଯାଏ
ପ୍ରାଣର ବାସନା ।
କିଭଳି କାହିଁକି
କେଜାଣେ କଥା
ଉଠେ ମୋ'ର ମନେ ।
କେତେ ଛବି ଉଠେ ଫୁଟି
ଅଭିନବ ବେଶେ ।
କେତେ ଗନ୍ଧ ଭାସି ଆସେ
ଅଜଣା ପ୍ରଦେଶୁଁ ।
ସକଳ ସୁଖର ଛବି
ହତାଶାରେ ଯାଏ ମିଶି
ଦିନର ଅାଲୋକେ ।
ଗୁରୁ ଚକ୍ଷୁ ମିଳି ଯାଇ
କଣ୍ଠ କରେ ରୋଧ ।

ଗୁପ୍ତ ଚିନ୍ତା ଏ ବେଦନା
କେ ବୁଝିବ ମୋର ?
ନାରୀ ଚିର ନିର୍ଯ୍ୟାତିତା
ସରଳା ଅବଳା
ଲଜ୍ଜାବତୀ ଲଜ୍ଜା ତାର
ଅଙ୍ଗର ଭୂଷଣ ।
ଅନ୍ତରରେ
ନିନ୍ଦାବାଦ, ଅପଯଶ
ଅଖ୍ୟାତି, ଅଶେଷ ।
କି କରିବ କାହାକୁ କହିବ ?
କି ରୂପେ ବା ଜଣାଇବ
ଗୋପନ ବାସନା ?
କେ ବୁଝିବ ପ୍ରାଣେ ଏ
ମର୍ମନ୍ତୁଦ ଜ୍ୱାଳା ?
ଜାଣିଲେ ଏ ସବୁ କଥା
ପ୍ରଗଲଭ ଭାବି
ଅତି ରୁଷ୍ଟ ହେବେ ପିତା ।
ସଖି ଦଳ ସକୌତୁକେ
କରି ଉପହାସ
ବିଦାରିବେ ଗୁପ୍ତ ।
( ସଖି କଲ୍ୟାଣୀ ପ୍ରବେଶ କରି )

କଲ୍ୟାଣୀ—ଚମତ୍କାର ।
ବରଷଣୀ ତାହାର ଧ୍ୟାନେ
ମଗ୍ନ ଅଛ ଅକୁଳ ଅଧୀରେ ?

ପ୍ରିୟତମା, ପ୍ରିୟ ପାଇଁ
ସାଜ ଉଦାସିନୀ
ଭ୍ରମିବ କ କାନନେ, ଡାଳ୍ରାରେ ।
କଏ ଜାଣେ ଅନ୍ତରର
କେଉଁ ନବ ଲୀଳା
ଉଠିବ ବଢ଼ନ୍ତି ?

ଦେବଯାନ—କଲ୍ୟାଣି !
ସ୍ୱର୍ଗ ପତି ଇନ୍ଦ୍ର ଯାର
ପିତାର କୌଶଳେ
ଥରହର; କମ୍ପମାନ
ନିଦ୍‌ବରେ ବସି,
କ କର ପାରିବ ତାକୁ
ତନୁ ଶାନ୍ତ କର ?

କଲ୍ୟାଣୀ—ଅପରୂପ ଲୀଳା ତାର
ସର୍ବେ ଜନ୍ତୁ, ଭୃନ—
ରୂପହୀନ ଦଶେ ଚନ୍ଦ୍ର ସମ,
ତପାଗ୍ନିରୀ ପଙ୍କେ ବନ୍ଧା
ବାର ନାରୀ ଦେହେ ।
ଅସାଧ ଜଗତେ ତାର
କଣ୍ଟ ଅଛି ସଖି ?

ଦେବଯାନୀ—ଭୁଲ ଯାଅ କିଆଁ ସନ୍ତୁ !
ଅସଂଯତୋପରେ ମାନ
ପ୍ରଭାବ ତାହାର ।

ନ ଧର ପାରିଲ୍ କହ
ପିନାକପାଣିଙ୍କୁ ?
କଲ୍ୟାଣୀ—ଶକ୍ତି ତାର ଦେଖାଇଲ
ହିମାଦ୍ରି ଶିଖରେ—
କୁମାର ପ୍ରାର୍ଥନା ପଥେ
ଯାଇଁ ଅନେକ କାଳ,
ଧରି ଫୁଲ ଧନୁର୍ବାଣ,
ମଦନ ଭେଟନ ତାର
ଜଡ଼ାଇ ଗୌରବେ
ସର୍ବତ୍ୟାଗୀ ମହେଶ୍ୱରେ
ବନ୍ଦୀ କଲା ସ୍ନେହେ ।
ଷୋଡ଼ଶୀ ତରୁଣୀ ବାଳା
ଦେଲା ନ ପାରିବ କେବେ
ଆଦେଶ ତାହାର ?
ଦେବଯାନୀ—ଅତି ଅବହେଳେ—
କଲ୍ୟାଣୀ—ଜ୍ୱଳନ୍ତ ପ୍ରମାଣ ତାର
ଦେଖୁଛି ନୟନେ,
ପିନାକପାଣିର ଭୁଲ
ପୂଜାର ଉତ୍ସବ,
ନିଭୃତେ ନିର୍ଜନେ ବସି
ତାରକା ଗଣନ,
ଘନ ଘନ ଦୀର୍ଘଶ୍ୱାସ,
ଅସଂଯତ ଭୂଷଣ ବେଶ,
ବନ୍ଧ ଯାଏ ଚିନ୍ତାକୁ ଲଗନ

ଗୁରୁ କନ୍ୟା ପକ୍ଷେ ଏହା
ଅତି ସୁଶୋଭନ ?
ଦେବଯାନୀ—କ ଭଲେ କଲ୍ୟାଣି !
ନ ପାରଇ ବୁଝି ଆଜି
ପିତାର ଆଦେଶ,
ବରଷକ ପରେ ଯେବେ
ପୂଜାରୁ ଉଠିବେ
ମାତିବେ ସକଳେ ।
ନିର୍ବେଳାରେ ସଙ୍ଗିହୀନ
ଏକାକୀ ରହିବେ ଜନ
ଆଶ୍ରମ ଭିତରେ ।
ଜାଣିନିଲି କ କାରଣେ
କଠୋର ଆଦେଶ ପିତା
ପ୍ରିୟ ଶିଷ୍ୟ ପରେ
ଥାଉଁ ଥାଉଁ ଅଗଣିତ
ଛାତ୍ର ବୃନ୍ଦ ତବ ।
ହସି ହସି ପିତା ଗୁଲିଲେ ନୀରବେ ।
( ନେପଥ୍ୟରୁ ଡାକ ଡାକି ଶୁକ୍ରାଚାର୍ଯ୍ୟ ପ୍ରବେଶ କଲେ )
ଶୁକ୍ରାଚାର୍ଯ୍ୟ—ଦେବଯାନୀ ! ଦେବଯାନୀ !
ଦେବଯାନୀ—( ଅଗ୍ରସର ହୋଇ ) ପିତା !
ଶୁକ୍ରାଚାର୍ଯ୍ୟ—ପ୍ରସୂତ ଜନନୀ ?
ଏ କି ମାତା
ସାଜ ସଜ୍ଜା ବରଜଣ

ଧଟେଛୁ ବାହିଁକି ଆଜ
ଯୋଗିନୀର ବେଶ ?

ଦେବଯାନି—ପିତା ।

ଶୁକ୍ରାଚାର୍ଯ୍ୟ—ପୂର୍ବ ଠାରେ ସଂକୋଚର
କିବା ପ୍ରୟୋଜନ ।

( କଲ୍ୟାଣୀର ପ୍ରସ୍ଥାନ )

ଦେବଯାନି—ଏତ-- !

ଶୁକ୍ରାଚାର୍ଯ୍ୟ—ପାଗଳିନୀ; ପାଗଳିନୀ
ଆଜ ଯାଏଁ ସେହୁ ତୁହି
ଅଟୀତ ବାଳିକା ମୋର ।
ଦୈତ୍ୟପୁରୀ ସାଜ ସଜ୍ଜା,
ଉତ୍ସବ କୌତୁକ,
ନିତ ହୁଏ ଘଟେ ଘଟେ
ସ୍ୱରଗ ପୁରୀରେ ।
ଭୁଲି ଯାଉ କାହିଁ କନ୍ୟା
ସ୍ୱର୍ଗ ବାସୀ କତ
ଦେଖିଛୁ ଏ ସବୁ ସେହୁ
ଅବାଲ୍ୟ କାଳରୁ ।
ଲବ୍‌ଧ ନୁହେଁ ଶିଷ୍ୟ ମୋର
ଅଧାର ଉତ୍ସବେ ।
ଉଚ୍ଛୃଙ୍ଖଳ ଉତ୍ସବରେ
ମିଳିଲେ ସେ ଯାଇ
ପଦେ ପଦେ ବିପଦର
ସମ୍ଭାବନା ମାତ୍ର !

ଦେବଯାନୀ---ଆଶ୍ରମେ ରହିବେ ଏକା ।
ଅଗ ପରି
ଯେଉଁ ଦୈତ୍ୟ କୁଳ—
ଶୁକ୍ରାଚାର୍ଯ୍ୟ—ବ୍ୟର୍ଥ କି ଭାବୁଛୁ କନ୍ୟା
ଜୀବନ ସାଧନା ?
କଠୋର ତପସ୍ୟା ବଳେ
ଲଭି ଅଛି ଯାହା ।
ଦେବତା, ଦାନବଙ୍କର
ଉଛି କାର ଶକ୍ତି,
ଲଙ୍ଘେ ମୋର ଦୁର୍ଲଙ୍ଘ୍ୟ ଗଣ୍ଡି
ପ୍ରବେଶ କରିବ ଆସି
ପବିତ୍ର ଆଶ୍ରମେ ?
ଶଙ୍କା ତ୍ୟାଗ କର କନ୍ୟା ।
ଦୈତ୍ୟଗୁରୁ ଅନୁରୂପ
ରାଜାର ଆଦେଶେ
ମିଳିବେ ସକଳେ ଯାଇ
ଉତ୍ସବ ମନ୍ଦିରେ ମା ଗୋ
ପୂଜା ଅଛି ନୁହେଁ ପିନାକୀର ।
ଦେବଯାନୀ—ପୂଜା ନୁହେଁ
ପିନାକପାଣିର ?
ଶୁକ୍ରାଚାର୍ଯ୍ୟ—ନା, ମା ପୂଜା ଅଛି ଅପଣାର
ପୂଜା ଅଛି ବିଳାସ, ଭୋଗୀର
ଘରେ ଘରେ ପଡ଼ୁଛି ଚହଳ କନ୍ୟା
ଅପଣା ବିକାଶେ,

ରତ୍ନ, ଅଳଙ୍କାର ଆଉ
ବସନ, ଭୂଷଣ
ଗର୍ବ, ଅହଙ୍କାର ମାନ
ପୂଜା ଉପସ୍କର ।
ଇଷ୍ଟ ଦେବ ପୂଜାର ଉତ୍ସବେ
ମଗନ ରହିବେ ରାଜା
ପ୍ରାସାଦ ଉପରେ
ବିଳାସ ସମ୍ଭୋଗେ ।
ଉପବାସୀ ପ୍ରତିନିଧି କରୁ ପୂଜା
କରୁ ଉପାସନା,
ଜଣାଉ ଦେବତା' ପଦେ
ରାଜାର ପ୍ରାର୍ଥନା—
ବନ୍ଧୁ ବାନ୍ଧବଙ୍କୁ ନେଇ
ଦଳି ସବୁ ପୂଜାର ବିଧାନ
ରହିବେ ମଗନ ରାଜା
ଆପଣା ସୁଖରେ ।
ଭୁଞ୍ଜି ଚର୍ବ୍ୟ, ଚୋଷ୍ୟ ଲେହ୍ୟ
ନାନା ଉପସ୍କର ।
ଶୁଦ୍ଧ ଲଗ୍ନ ଶୁଦ୍ଧ କ୍ଷଣ
କରି ଅତିକ୍ରମ—
ଆସିବେ ସୁବିଧା ମତେ
ଦେବତାର ଘରେ
ପୂଜା ନୁହେଁ, ପୂଜା ନୁହେଁ ମାତ୍ର

ଶିଶୁ ଖେଳ—ଶିଶୁ ଖେଳ ।

ଖେଳା ଘରେ ଗୁଲ୍ ମା ଗୋ
ସୁନ୍ଦର ଜନନୀ,
ସାଜି ଉପଯୁକ୍ତ ସାଜେ
ସ୍ୱୟଂ ଅହଲ୍ୟା ଜନ୍ୟା ।

( ପ୍ରସ୍ଥାନ-କଲ୍ୟାଣୀର ଫୁଲ
ଧର ପ୍ରବେଶ—ଗୀତ ଗାଇ ଗାଇ ଦେବତାନଙ୍କୁ
ସଜାଇଲେ )

କଲ୍ୟାଣୀ–(ଗୀତ)

ଫୁଲେ ଫୁଲେ ଅଙ୍ଗ ଫୁଲ ସଜ୍ଜି
ସଜାଇବ ମୋର ମନ ଜଣି ॥
ଅଳକରେ ଦେବ ଚୁଡ଼ିଅନା
ନ ମାନିବ ସହୁ ଚୋର ମନା ।
ହିଆଁରେ ଦେବ ଗୋ ଯୁଇଫୁଲ
କରବୀରେ ଦେବ ଗୋ ଅତୁଳ ।
ନୟନେ କଜଳ ଦେଲେ ଟାଣି
ହରଣୀ ହୋଇବ ଅଚେ ହାଣି ॥
ନାକେ ବସଣି ଶୋଭିଷ ଫୁଲେ
କୁନ୍ଦେ ମନ୍ଥ ହାର ବନା ମୂଳେ ।
ବାହୁରେ ସଜାଇ ମଲ୍ଲୀ ତାଡ଼,
ଚନ୍ଦ୍ର-ମଲ୍ଲୀକାରେ ଚନ୍ଦ୍ର ହାର,
ରଙ୍ଗଣୀ ନୂପୁର ପାଦେ ଅଣି
ଦେଲେ ମୂକ ହେବ କବ ବାଣୀ ॥

( ପଟ କ୍ଷେପଣ

## ଚତୁର୍ଥ ଦୃଶ୍ୟ

(ସ୍ଥାନ—ଶୁକ୍ରାଚାର୍ଯ୍ୟଙ୍କ ଆଶ୍ରମ । କାଳ-ରାତ୍ରି । ଦେବଯାନୀ ଉଦ୍‌ବିଗ୍ନା ହୋଇ ଡାକି ଡାକି ପ୍ରବେଶ କଲେ )

ଦେବଯାନୀ—କଚ, କଚ ।
ଏଠି ନାହଁ ସେଠି ନାହଁ
କାହିଁ ଦେବସୁତ ?
ପିତାର କଠୋର ଗଣ୍ଡି
କରି ଅତିକ୍ରମ
କି ପଶିଲ ଆଶ୍ରମ ଭିତରେ !
ଭକ୍ଷଣ କଲା କି କେହୁ
ଦେବଗୁରୁ ସୁତେ ?
କଚ, କଚ, ଋଷିପୁତ୍ର
କାହିଁ ଅଛ ସଖା ?
ଅନ୍ତରାଳେ ରହି କଅଁ
ବ୍ୟସ୍ତ କର ଏତେ ?
କଚ ! କଚ !
ଆସିବେ ଏକ୍ଷଣି ପିତା
ଦେଖି ତବ ଗତି
କି ଭାବିବେ
ଭାବିଛ ନା ମନେ ?
କଚ, କଚ ।
ଅଭିମାନୀ, ଅଭିମାନେ

ଚାଲିବ ଗୋପନେ ଫେରି
ଆପଣା ନିବାସେ ?
ଏହା ଠାରୁ ଶତ ଗୁଣେ
ଶୋଭନୀୟ ଲୋଭନୀୟ
କସ୍ତୂରୀର ଛବି
ଦେଖିଛ ତ ଆଦାଲୀରୁ
ସେଥିପାଇଁ କଅଁ ଅଭିମାନ ?
ଛାଡ଼ି ବିପଦ ଭୟ
ନିବେଦିଲେ ପିତା
ଯିବାକୁ ସେ ଇନ୍ଦ୍ରର ମନ୍ଦିରେ ।
ଚଳ ! ଚଳ !
ଦେଖିବ ଶପଥ ଛାମ
ଆସ, ଆସ ସଖା ।

( ଶୁକ୍ରାଚାର୍ଯ୍ୟ ପ୍ରବେଶ କରନ୍ତି କହନ୍ତି )

ଶୁକ୍ରାଚାର୍ଯ୍ୟ—ହେ ଅସୁର ମାତା—
ଦାରୁଣ ସଂକଟ ମୋର
ନିବେଦ ଯେ କର ।

ଦେବଯାନୀ—ଶଙ୍କିତ କ ହେତୁ ପିତା
ଅଟ୍ଟ ତବ ହସ୍ତୀବନୀ
ଦେବଙ୍କା ଦୁର୍ଲ୍ଲଭ ।

ଶୁକ୍ରାଚାର୍ଯ୍ୟ — ତାହାହିଁ ବିପଦ ମୋର
ଘଟାଇଛୁ ମାତା ।
ଦେବଗୁରୁ ପ୍ରତିଦ୍ୱନ୍ଦୀ

ପଥ୍ଚ, ଅଷ୍ଟମ ଅଙ୍କ
ଅତି ଅସହାୟ ।

ଦେବଯାନି — ହରିଲା କେ
ପଞ୍ଚେନ୍ଦ୍ରିୟ ଶକତ ?

ଶୁକ୍ରାଚାର୍ଯ୍ୟ — ଦୈବ ମାତା ଦୈବ,
ଦୈବ ଛଳକଳ,
ଶାନ୍ତ ଶିଷ୍ଟ ପ୍ରିୟ ଶିଷ୍ୟ ମୋର
ବୁଝି ନ ପାରିଲା ବତ୍ସେ
ଦୈତ୍ୟର ଛଳନା ।
ହାର ଦେଖେ ଛଦ୍, ଦୈତ୍ୟକୁଳ
ସୃଜିଲେ ଦାନବ-ମାୟା ।
ନାଶି ଏକ ଡାକିଲା ଭାତରେ
କିଏ ଅଛ ରକ୍ଷା କର ଆସି
ସଞ୍ଜୀବ ରତନ ମୋର
ଯାଏ ଶବ୍ କଟେ ।
ମତିମାନ୍ ପ୍ରିୟ ଛାତ୍ର ମୋର
ଭୁଲି ନିଜ ସହସ୍ର ବିପଦ,
ଲଙ୍ଘ ମୋ ଆଦେଶ
ଅତିକ୍ରମ କଲା ଗଣ୍ଡି ।
ପାଇ ଏକା, ଦୈତ୍ୟକୁଳ
ନିକ୍ଷେପ କରିଲେ ମାତା
ଜ୍ୱଳନ୍ତ ବହ୍ନିରେ ।

ଦେବଯାନି — ସଞ୍ଜୀବିତ କରପିତା

ତବ ମନ୍ତ ବଳେ ।
ଶୁକ୍ରାଚାର୍ଯ୍ୟ — ଜାଣିଛି ମା, ଜାଣିଅଛି,
ଜାଣି, ମଣୁଅଛି ।
ଦୈବ ବିଡ଼ମ୍ବନା ଛଡ଼ା
ନ କହିବ କିଛ ।
ଆଗୋ ପରେ ନ ବଗୁଣ
ସୁତ ମତେ ଅଦ୍ଧାନଳ
ଚ୍ଛିନ୍ନ ଶିଷ୍ୟ ମୋର
ପାଇଲା ଜୀବନ ସେହୁ
କୁକ୍ଷିର ଉଦରେ ।
ଦେବଯାନୀ — କୁକ୍ଷିର ଉଦରେ ?
ଶୁକ୍ରାଚାର୍ଯ୍ୟ — ଦୁଷ୍ଟମତ, କ୍ରୂର କର୍ମା
ହୀନ ଦୈତ୍ୟକୁଳ
ଭସ୍ମ ତାର ପିଆଇଲେ
ସଂଜୀବନୀ ପାଣେ ।
ସଂଜୀବନୀ ସୁଧା ନୁହେଁ,
ସୁଧା ନୁହେଁ ମାତା
ସୁରା, ମାତା, ସୁରା ।
ସୁରାର ସାଧନ କରି
ଏକ ଚକ୍ଷୁ ଗଲା,
ତଥାପି ଅକ୍ରୋଶ ବଶେ
ଭୁଲି ଗଲି ବ୍ୟବଧାନ
ସୁରା ଓ ସୁଧାର ।

ଫଳ ତାର,
ଅବଶ୍ୟ ଭୋଗିବ ।
ଯା ଘଟିଛି, ତାହିଁ ତତ
କଷ୍ଟ ନ ବଗୁର
ଅକୁଳ ଆବେଗେ ଚଳି
ମନ୍ତ୍ରର ପ୍ରୟୋଗ,
ସଂଜୀବିତ ଏବେ ତତ
କୁକ୍ଷି ମଧ୍ୟେ ମୋର ।
ଗୁରୁ ଶିଷ୍ୟ ସାଥି ହୋଇ
ଫିରୁଁ ପରଲୋକେ !

ଦେବଯାନୀ — ମୃତ ସଂଜୀବନୀ ମନ୍ତ୍ର
ଶିକ୍ଷା ଦିଅ ପିତା ।
ବିଦାରି ଅପଣା କୁକ୍ଷି
କାଢ଼ିଅଁ ତତକୁ ।
ମନ୍ତ୍ରବଳେ ପ୍ରାଣ ତବ
ଆଣିବ ଫେରାଇ ।

ଶୁକ୍ରାଚାର୍ଯ୍ୟ—ଏ ମନ୍ତ୍ର ଗ୍ରହଣ ଯୋଗ୍ୟ
କାହୁଁ ଶିକ୍ଷା ତବ ?
ଅଛି ତାହା ଏକ ମାତ୍ର
କଚ ଠାରେ ମୋର ।

ଦେବଯାନୀ — ଶିକ୍ଷା ଦିଅ ତହିଁ ପୂର୍ବେ ।
ବିଦାରଣ କୁକ୍ଷି ତବ
କରି ଅଗମନ, ଅବହେଳେ

ସଂଜୀବନ କରବେ ସେ
ମନ୍ତ୍ରର ପ୍ରଭାବେ ।
ଶୁକ୍ରାଚାର୍ଯ୍ୟ — ଅସମ୍ଭବ ମାତା !
ସୁରପୁରର ଲକ୍ଷ୍ୟ ନ ଭାର୍ଗବ
ହିଂସା ବଶେ ଆସି ଦୈତ୍ୟପୁରେ
କଠୋର ସାଧନ କଲ
ଯୁଗ ଯୁଗ ଯେଉଁ
ଆଜି ସେହୁ ନିଜଗତେ
ଶ୍ରେଷ୍ଠ ବୈଜ୍ଞାନିକ;
ତୁଚ୍ଛ ଜୀବନର ଭୟେ
ଆଚସ୍ତୃତ — ଦୈତ୍ୟର ସମ୍ମତ
ଦେଇ ନ ପାରଇ ମାତା
ଦେବତା କବଳେ ?
ଭୁଲିଲ ଜନନୀ, ମୋର
ପ୍ରିୟ ଶିଷ୍ୟ ସବୁ — ।
ଅସହ୍ୟ, ଅପହ୍ୟ ବ୍ୟଥା
ଭଗବାନ ! ପାପର କ
ଏହୁ ପରିଣାମ — ?
ନହିଁ, ଦିଷ୍ଟପିତା ନାଶିଲେଣ !
ଦେବଯାନି — କନ୍ୟା ତବ ସ୍ତ୍ରୀନା ନହେ
ଦୀନା ନୁହେଁ ପିତା ।
ସଞ୍ଚାରିତ ରକ୍ତ ତବ
ମୃତ ଧମନୀରେ

ନିଃସଂଶୟେ ଋଷି ପୂବେ ତବ ଦାନ
ମହା ବଦ୍ୟା ତବ !
ମୋ ରୂପ ଯୌବନ ଦେଇ
ନେବ କିଣି ସ୍ୱାଧୀନତା,
ସ୍ୱର୍ଗ ଫେରିବାର ।
ଶୁକ୍ରାଚାର୍ଯ୍ୟ —ଅମା ନିଶା ବକ୍ଷ ଭେଦି
ଜ୍ଞାନର ଜନନୀ,
ଜ୍ୱାଳିଲୁ ପ୍ରଦୀପ୍ତ ଆଲୋ—
ଯୁକ୍ତ ତବ ସଗୌରବେ
କରିଲି ଗ୍ରହଣ ।
ପ୍ରଜାପତି ଅଙ୍ଗିରାର ପିତା,
ବୃହସ୍ପତି ଅଙ୍ଗିରା ନନ୍ଦନ,
ସ୍ନେହର ଦୁଲାଳ ତାଙ୍କ
ପ୍ରିୟ ଶିଷ୍ୟ ମୋର ।
ଅଯୋଗ୍ୟ ସେ ନୁହେଁ ତୋର
ଭୀଷଣ ସମସ୍ୟା ମାଗୋ
କଲୁ ସମାଧାନ ।
ଅନ୍ତରାଳେ ଯାଅ ମା କଲ୍ୟାଣି !
ବଦାରେ କୁଟି ମୋର ।
( ଦେବଯାନୀଙ୍କ ପ୍ରସ୍ଥାନ—ଶୁକ୍ରାଚାର୍ଯ୍ୟ ସ୍ତିମିତ ନୟନେ ମନ୍ଦ ଦା·
ରେ କୁଟି ବେଦୀରୁ ବିଦାରୁ ଡାକିଲେ )
କଚ ! କଚ !
ନବୀନ ଆଲୋକେ ଆସ
ଭୁଲି ଯାଇ ଗରଲ-ଯନ୍ତ୍ରଣା ।

ଚଳ ! ଚଳ !
ପ୍ରିୟ ଶିଷ୍ୟ ମୋର ।

(ଯବ ନିକ୍ଷେପଣ)



## ପଞ୍ଚମ ଦୃଶ୍ୟ

[ ସ୍ଥାନ—ଶୁକ୍ରାଚାର୍ଯ୍ୟଙ୍କ ଆଶ୍ରମ । କାଳ—ପ୍ରଭାତ, ନବୀନ ରବିର ଅଲ୍ପ ଦେବଯାନୀର ମୁଖରେ ପଡ଼ି ରକ୍ତିମାଭ ପ୍ରକାଶୁଥିଲା ଗଭ ଗୁଣ ]

ଦେବଯାନୀ— ସତେ କ ତେଜିବ ସଖା
ଆଜ ଦୈତ୍ୟଭୂମୀ ?

କଚ— ନିରୁପାୟ, ନିରୁପାୟ ଦେବ !
କର୍ତ୍ତବ୍ୟର ଗୁରୁ ଭାର
ବହ୍ନି ଶିରୋପରେ
ଆସିଥିଲି ପରବଶ ଆଶ୍ରମେ ।
ଗୁରୁର କରୁଣା ବଳେ
ପାଇଲି ମୁକତ
ଫେରିବାକୁ ହେବ ଦେବ !
ଅମର ଅଳୟେ ।
କିନ୍ତୁ ଭଣ୍ଡବାଲ,
ପ୍ରତି କ୍ଷଣେ ଆଶ୍ରମର ସ୍ମୃତି
ସଗର୍ବେ ଉଠିବ ଫୁଟି

ହୃଦୟ ମନ୍ଦିରେ
ସରସୀରେ ସଙ୍ଗ ଫୁଟା
ଶତଦଳ ସମ ।
ଧୀନର ଅଭ୍ରେବେ
ବନ୍ଧୁ କହୁଛ ହେବ ନାହିଁ ଦେଖ ?

ଦେବଯାନୀ — ସୁନ୍ଦର ଅତଥି !
ଭାବୁଛ କେବଳ ମନେ
ଗୋଗୃନଣ କଥା
ଅନ୍ତରେ ବାଜୁଛି ଖାଲି
ଅଗ୍ନିସଂର ଖେଳା
ଶୂନ୍ୟ ଗ୍ରାଣୀ ନୀସଙ୍ଗ ଜୀବନ ମୋର
ମନେ କ ପଡୁନି ସଖା ?

କଚ— ତବ ସ୍ମୃତି ଶ୍ରେଷ୍ଠ ଅଟଇ
ହୃଦୟ ମନ୍ଦିରେ ।

ଦେବଯାନୀ — ମନେ ପଡ଼େ କଚ
ପ୍ରଥମ ସେ ଦିନ
ଆସିଲ ଦାନବ ପୁରେ ?

କଚ— ଭୁଲି କି ପାରିବ କଚ
ତବ ଉପକାର ?
ନିର୍ବଂଶେ ଫେରନ୍ତ ଥିଲେ
ଧୀନ ଶିଷ୍ୟେ ଗୁରୁ
ତମର କରୁଣା ବଳେ
ଲଭିଲ ଅଭ୍ରୟ ।

ଦେବଯାନି—ମଠନ ପଡ଼େ
ଯେଉଁ ଦିନ ଏକାକୀ ନିର୍ଜନେ
ତପୋବନ ତଳଇ
ଶାନ୍ତି କ୍ଳାନ୍ତ ଶୋଇଥିଲି
ଦ୍ୱିପ୍ରହରେ—
କଚ—ଜୀବନ୍ତ ମରଣ ରୂପୀ
ବିଷଧର ଫଣୀ
ଦଂଶିବାକୁ ଆସୁ ଥିବା ବେଳେ
ରକ୍ଷା କଲ ତମେ ଦେବ !
ଅସହାୟ ଜୀବନ ।
ଦେବଯାନି—ଦୈତ୍ୟକୁଳ ଯେଉଁଦିନ
ଗହନ କାନନେ—?
କଚ—ଥରେ ନୁହେଁ
ବାର ବାର ତିନି ବାର
ଛଡାଇଲେ ମୋତେ
ପାଇଲି ଜୀବନ ଖାଲି
ତବ କୃପା ବଳେ ।
ଭୁଲି କି ପାରିବ କଚ
ତବ ଅନୁଗ୍ରହ ?
ଜୀବନ ଦାୟିନୀ ମୋର
ଅଣାର ପ୍ରଦୀପ—
ଘରେ ଘରେ ସ୍ୱର୍ଗପୁରେ
ଗାଇବ ଗୌରବ ଗାଥା
ବୃହସ୍ପତି ସୁତ-ସଗୌରବେ ।

ଦେବଯାନୀ—ଏହି ମାନ ପ୍ରତିଦାନ କଚ ?
ଅନ୍ତର କାମନା କିଛି
ମର୍ମର ମନ୍ଦିରେ
ଗୁଞ୍ଜରି ଉଠେ ନା ସଖା ?
କଚ—ପୂର୍ଣ୍ଣ ମନସ୍କାମ ଆଜି
କୃତାର୍ଥ ଏ ଦାସ ।
ଦେବଯାନୀ—ଭ୍ରାନ୍ତ ଦେଖ ମନେ—?
କଚ—କର୍ତ୍ତବ୍ୟର ଦାସ, ଦେବି !
ଆଦେଶେ ତାହାର
ଆସିଥିଲି ଦୈତ୍ୟପୁରେ ,
ଶୁଭଲକ୍ଷ୍ମୀ ଅନୁଗ୍ରହେ ତବ
ବିଜୟୀ ଫେରିବ ଘରେ
ଆଜି ସାନନ୍ଦରେ ।
ଦେବଯାନୀ—କହ ସଗୌରବେ ।
ଜାଣେ ସଖା ଦେବକୁଳ
ଆକୁଳ ଅଧୀରେ
ଜନ୍ମ ସକଳେ ବସି
ତବ ପ୍ରତ୍ୟାଗମେ ।
ଦର୍ଶନ ମାତ୍ରକେ ତବ
ବାଜିବ ମଙ୍ଗଳ ଶଂଖ
ପ୍ରତି ଘରେ ଘରେ ।
ବର୍ଷିବେ ସ୍ୱହସ୍ତେ ଫୁଲ
ସୁର ବାଳା ଗଣ ।
ସ୍ୱର୍ଗପୁରେ ପାଇବ ସମ୍ମାନ ।

ସୁଖୀ ହେବ ଲକ୍ଷ୍ମୀ ହେବ
ଲଭିବ ଗୌରବ ।
କିନ୍ତୁ ସଖା ଉଚ୍ଚ ମନ୍ଦିରର ଧାମେ
ମଗ୍ନ ଥିବା ବେଳେ
କୁଟିରେ ବସି ନାରୀ ଏକ
କରିବ କ୍ରନ୍ଦନ
ପରମ ନିରାଶେ ।
ହୃଦୟ ବିଦାରି ତାର
ହା ହା କାର ଧ୍ୱନି
ଜୀବନ୍ତ ମରଣ ଦେବ
ତଳେ ତଳେ ଆଣି ।
କି କଠୋର ସେ ବେଦନା
କଳ୍ପନାର ଅତୀତ ତମର ।
ଛଟ—ଏ କି କଥା ଦେଖ !

ଦେବଯାନି—ବସିଛ କି ହେତୁ ସଖା
ମନେ କି ପଡ଼େ ନା ତବ
କେତେ ସନ୍ଧ୍ୟା କେତେ ଦିବା
କଟାଇ ନିଭୃତେ
ଆପଣା ସୁଖରେ ଥିଲେଁ
ଆନନ୍ଦ ବିଭୋର ।
ପ୍ରୀତ ଧନ ସ୍ୱରରେ
ମଧୁମୟ ଗାନ
ଶୁଣାଉଛ ଭୁଲି ସବୁ ବାଧା
ଫୁଲ ତୋଳା, କାନନ ଭ୍ରମଣ

ଗଳ୍ପ ସଳ୍ପ ହସଖେଳ,
ନାହିଁଚ ଥିଲ କ ଖାଲି
ନାହିଁଚ ଥିଲ କ ଖାଲି
ବ୍ରହ୍ମଚର୍ଯ୍ୟ ପଦେ !
ଜାଣ ସଖା !
ନାରୀର କାମନା ନୁହେଁ
ଶିଶୁର କ୍ରନ୍ଦନ,
ଭଗିନୀର ସ୍ନେହଧାର
ଗୁରୁଙ୍କ ଅଶିର୍ବାଦ
ରହେ ସଖା କର୍ତ୍ତବ୍ୟର ପଦେ ।
ନାରୀର ପ୍ରାର୍ଥିତ ପ୍ରେମ
ବିଳାସ ମୁକୁଟ
ଶୋଭେ ଶିରେ ପଟ୍ଟର ଭାର ।
ଭୁଲି ଯାଅ ସ୍ୱର୍ଗ ପ୍ରଲୋଭନ
ସହସ୍ର ଅମରା ବଣୀ
ପ୍ରେମ ଦେବ ଗଢ଼ି ।

କଚ—କଲ୍ୟାଣୀ ଭଗିନୀ ମୋର
ଏ କି ପରିହାସ ଆଜି
କଦାପି ଲଗନେ ?

ଦେବଯାନୀ—ପରିହାସ ନୁହେଁ ସଖା,
ଅଟେ ପରିଚୟ !

କଚ—ଗୁରୁ କନ୍ୟା ! ଗୁରୁ ଗୃହେ
ବ୍ରହ୍ମଚର୍ଯ୍ୟ ବାସ

ର ଶିଖିଲ, ପରୀକ୍ଷାର
ଏହି କି ସମୟ ?
ଦେବଯାନୀ—ପ୍ରିୟ କଚ ! ନନ୍ଦନ ନିବାସୀ
ଲକ୍ଷ ଗୁଣ ସତ୍ୟ କହେ
ବିଦାୟ ଲଗନେ,
ଶୁକ୍ରାଗ୍ରଜା ଦୁହିତା,
ତବ ପ୍ରେମ ଭିକାରିଣୀ ।
କଚ—ନିଜଗତ ଦକ୍ଷ ଥାଇ
ଭକ୍ତି ସଞ୍ଚାଳନ
ସହସା ହେଲା କି ସ୍ତବ୍ଧ ?
ଅଥବା ଚେତନାହୀନ,
ଅଣନା ସନ୍ଧ୍ୟାରେ !
କ୍ଷୁବ୍ଧ କୋମଳ ଦେବି !
ଜୀବନ ଦାୟିନୀ,
ଦୀର୍ଘ ରୁଦ୍ରଚର୍ଯ୍ୟା ବ୍ରତ,
ତପ୍ୟାଗି ସ୍ୱଜନ,
ସୁଦୀର୍ଘ ପ୍ରବାସ ବାସ,
କ କଠୋର ସଙ୍କଳ୍ପର ପ୍ରାଣ ତାହା
ଜାଣ ଦେବି ?
ଦେବଯାନୀ—ଜାଣେ ବନ୍ଧୁ !
ନୁହେଁ ତାହା ଶୃଙ୍ଗାର ସାମଗ୍ରୀ ।
ସାଫଲ୍ୟ ସଫଳତା ଦେଇ
ବୌର୍ଯ୍ୟ ବୃତ୍ତି ତବ
ରଖିଥିଲି ସଂଗୋପନେ

ହେ ସୁନ୍ଦର ବୀର !
ମୃତ ସଂଜୀବନୀ ବିଦ୍ୟା
ଦେବକୁଳ ପାଇଁ
ଅର୍ଜିବା ଆପଣ ଆସିଥିଲ
ଦୈତ୍ୟ ପୁରେ ।
ଶିଖିଛ କରୁଣା ବଳେ
ଅଛ ପୂର୍ଣ୍ଣକାମ ।
ତେଣୁ ଭୁଲି ସୁଖ ସ୍ମୃତି ସବୁ
ଅବେଳେ ଯିବାକୁ ଗୃହ
ଫେର ସ୍ୱର୍ଗ ପୁରେ ।
କଚ—ଆସିବା ଦିନରୁ ଗୁରୁ
ଦେବ ଭୂମି ମୋର
ସହସ୍ର ସ୍ନେହର ପୁଷ୍ପ
କରି ଅର୍ଘ୍ୟ ଛଳେ ।
ବିଦାୟ ଲଗନେ ମୋର
ଶୁଭ ଯାତ୍ରା ପଥ
ଅଶ୍ରୁରେ ସିଞ୍ଚିଲା କିଆଁ
କରି ଦେବ ଦେବ ?
କାୟମନୋବାକ୍ୟେ ସେବା
କରିଛି ଶୁଶ୍ରୂଷା
ପୁରସ୍କାର ଯଦ ତାର
ଲଭି ଥାଏଁ କିଛି
ଚୌର୍ଯ୍ୟ ଅଖ୍ୟା ଦେଇ ତାକୁ
ମାନ କି କରିବ ମୋର
ଜୀବନ ଦକ୍ଷିଣା ?

ଦେବଯାନୀ—ସୁନ୍ଦର ଅତିଥି,

ପ୍ରାଣ ଉତ୍ସେ, କନ୍ୟା ସ୍ନେହେ
ଭୃଗୁର ନନ୍ଦନ
ସମର୍ପିଲେ ଦୈତ୍ୟର ସମ୍ପଦ
କଠୋର ସାଧନା କରି
ଲଭିଥିଲେ ଯାହା
ମୃତ ସଂଜୀବନୀ ବିଦ୍ୟା ।
ପୁରସ୍କାର ଅଖ୍ୟା ତାର
ନୁହେଁ ସମିଚୀନ ।
ସ୍ୱର୍ଗ ପୁରେ ଯିବ ତମେ
ଯାଅ ଅବହେଳେ
ଭୁଲି ଯାଇ ସବୁ ସୁଖ ସ୍ମୃତି,
ଅନୁରୋଧ ନ କରିବ
ଶୁକ୍ରାଚାର୍ଯ୍ୟ ସୁତା,
ଯିବ ଯାଅ ମାତ୍ରାବା ଦେବତା
ହରି ମୋର ମନ ପ୍ରାଣ
ଲଭ କାମ୍ୟ ଫଳ ।
କିନ୍ତୁ ସଖା ପାଇଥିଲ ଏତେ ଭଲ
ସ୍ନେହ ପ୍ରେମ ପ୍ରୀତି
ଯିବା ବେଳେ ଦେଇ ଯାଅ
ତହୁଁ ବେଶି କଷ୍ଟ ।
ସେ ବିଦ୍ୟା ଗର୍ବେ ଦଳ
ନାଶିବ ଭାଗ୍ୟତ

ଲଙ୍ଘି ତାର ପ୍ରେମ ଗଣ୍ଡି
ଯାଉଛ ସରଗେ
ସେ ବିଦ୍ୟାର ଭାର ବାହି ହେବ ଗ ଲ ତ ମ
ଶିଖାଇବ ଦେବତାଙ୍କୁ
ପ୍ରୟୋଗ କରିବା ଶକ୍ତି
ନ ଥିବ ତୁମ୍ଭର ।
ଦେଇ ଯାଅ ସଙ୍ଗେ ତବ
ସ୍ୱତ ଅଭିଶାପ ।
କଚ—କି ଭଲ କଲ୍ୟାଣି
ଅଦବଣୀ ଭଗ୍ନୀ ମୋର,
ବିଦାୟ ଲଗନେ ଦେବେ
ନିଅ ପ୍ରତିଦାନ— ।
ଅତ୍ମଜନେ ଲଭିବ ଅଚିରେ
ରୂପେ ଗୁଣେ ସମ ଯୋଗ୍ୟ ବର
ଭୁଲିଯିବ ଅଭାଗାକୁ
ଚିରଦିନ ପାଇଁ ।
ଦେବତାର ଆଶୀର୍ବାଦ
ନୁହେଁ ଅଭିଶାପ ।
( ପଟ କ୍ଷେପଣ )

ସମାପ୍ତ

# ଆମର କେତୋଟି ଜନପ୍ରୀୟ ପୁସ୍ତକ

## ଉପନ୍ୟାସ

| | | |
|---|---|---|
| ମସ୍ତିଚକା | ... ଉସାନନ୍ଦ ସାହୁ | ... ଟ୨।୵ |
| ସତଦେଙ୍ପୂର୍ତ୍ତି | ... ବାଜବବନ୍ଧୁ ଦାସ | ... ଟ୧୯ |
| ପ୍ରଥମ ପ୍ରେମ | ... ଲକ୍ଷ୍ମୀନାରାୟଣ ମହାନ୍ତି | ... ଟ୧୯ |
| ବୀଣା | ... ଲକ୍ଷ୍ମୀନାରାୟଣ ସାହୁ | ... ଟ୦୩ |
| ମଲ୍ଲ ମଣିଷ ତଥା ବର୍ଚ୍ଚି | ... (ଡ଼ିଟେକ୍ଟିଭ) | ... ଟ୧୪ |
| ଜହର | ... ( ଶ୍ରେଷ୍ଠ ଗଳ୍ପ ସଂଗ୍ରହ ) | ... ଟ୧୪ |
| ନବବଧୂ | ...(ପାଞ୍ଚଟି ବଡ଼ ଗଳ୍ପ) | ... ଟ୨୯ |
| ଗାନ୍ଧି ଅବତାର | ...(ଗାନ୍ଧୀବାଦର ବିଶ୍ଲେଷଣ) | ... ଟ୧୪ |

## କବିତା

| | | |
|---|---|---|
| ନନ୍ଦାରିକା | ... ଅନନ୍ତପ୍ରସାଦ ପଣ୍ଡା | ... ଟ୧୪ |
| ଜହ୍ଲକ ଗୀତ | ... ଦେବଦୂତୀ ଦେଈ | ... ଟ୦।୵ |
| ଗୀତପାଠ | ... ବାଜସ୍ୱବନ୍ଧୁ ଦାସ | ... ଟ୧୯ |
| ଅଭିସାରେ | ... ଦେବରାଜ ମିଶ୍ର | ... ଟ୦୪ |
| ଅଗ୍ନିଗିମୀ | ... ସତ୍ୟନାରାୟଣ ପାଢୀ | ... ଟ୦୪ |

## ନାଟକ

| | | |
|---|---|---|
| ଅଭିଶପ୍ତା | ... ନୀଳକଣ୍ଠ ପଟ୍ଟନାୟକ | ... ଟ୧୯ |
| ଅବିଶ୍ୱାସୀ | ... ବେଣୀମାଧବ ପାଢ଼ୀ | ... ଟ୧।୵ |
| ନାରୀ | ... କାଳିପ୍ରସନ୍ନ ଭଦ୍ର | ... ଟ୦।୵ |

ଓଡ଼ିଆ ଲେଖକ ସହଯୋଗୀ ସମିତି ଲିଃ କଟକ ୨

## କବିଚନ୍ଦ୍ର ଶ୍ରୀ କାଳୀପ୍ରସନ୍ନ କବିଙ୍କ ଗ୍ରନ୍ଥାବଳୀ

| | |
|---|---|
| ଗଳ୍ପ ମଞ୍ଜରୀ | ଟ୦୪ |
| ଅଶ୍ରୁଧାରା | ଟ୧୮ |
| ହଟନାଗର ଯାତ୍ରୀ | ଟ୦୪୵ |
| ଅଭିଶାପ ସିଂହ | ଟ୧୮ |
| ଶନିଚାର ରାଣୀ | ଟ।୵ |
| ମା | ଟ୦। |
| ମହାମାୟା | ଟ୦। |
| କଙ୍କ କଦମ୍ବୀ | ଟ୦୵ |
| ପାରିଜାତ | ଟ୦୵ |
| ଜବ ରାଣୀ | ଟ୦୵ |
| କିରଣ ପତାକା | ଟ୧୮ |
| ନାରୀ | ଟ୦।୵ |
| ରତ୍ନ | ଟ୦। |

ପ୍ରାପ୍ତିସ୍ଥାନ:—ସାରସ୍ୱତ ଭଣ୍ଡାର, କଟକ ଓ ଅନ୍ୟାନ୍ୟ
ପ୍ରସିଦ୍ଧ ଦୋକାନରେ

## ବଙ୍ଗୋପନ୍ୟାସ

| | |
|---|---|
| ସୂଚରର ରେଣ୍ | ଟ ୦୪ |
| ସଣୀର ବେଣୁଦା | ଟ୧୮ |
| ନାକା ବାବୁ | ଟ୧୮ |
| ଦଳଭଗା | ଟ୦୧ |
| ଭ୍ରମ ବିଭ୍ରାଟ (ନାଟକ) | ଟ।୵ |

ପ୍ରାପ୍ତିସ୍ଥାନ

**Central Book Agency.**

*14, College Square, Calcutta.*